ଶିକ୍ଷା ବିଭାଗୀୟ ଡିରେକ୍ଟରଙ୍କ ଦ୍ୱାରା ୧୧।୫।୪୮ ତାରିଖର ୨ ନମ୍ବର
ନୋଟିଫିକେସନରେ ୭ମ ଶ୍ରେଣୀର ପାଠ୍ୟପୁସ୍ତକରୂପେ ନିର୍ବାଚିତ

---

# ସାହିତ୍ୟ ସୌରଭ

## ଦ୍ୱିତୀୟ ଭାଗ

## ସପ୍ତମ ଶ୍ରେଣୀ ପାଇଁ


ସଂଗ୍ରାହକ

**ଶ୍ରୀ ରାମଚନ୍ଦ୍ର ମହାପାତ୍ର, ଏମ୍. ଏ. ଏଲ୍. ଟି କାବ୍ୟତୀର୍ଥ**

ପ୍ରଫେସର, ରେଭେନ୍ସା କଲେଜ, କଟକ

**ଶ୍ରୀ କାଶୀନାଥ ମିଶ୍ର**

ସହକାରୀ ଶିକ୍ଷକ, ମିଶନ ହାଇସ୍କୁଲ, କଟକ



ନୂତନ ମୁଦ୍ରଣ

୧୯୪୮

ପ୍ରକାଶକ—

ଶ୍ରୀ ରାମଚନ୍ଦ୍ର କର

**ଓଡ଼ିଶା ବୁକ୍ ଏମ୍ପୋରିୟମ୍**

ବାଲୁବଜାର, ପୋଃ ଗୃଦମାରୋଡ଼ିକ, କଟକ

ପଦର ଅଣା

## କୃତଜ୍ଞତା ଜ୍ଞାପନ

ସାହିତ୍ୟ ସୌରଭ ସଂକଳନରେ ଯେଉଁ ସହୃଦୟ ସୁଧୀବୃନ୍ଦ ସେମାନଙ୍କର ପଦ୍ୟ ବା ପ୍ରବନ୍ଧାଦି ଦାନ କରି ଆମ୍ଭମାନଙ୍କୁ ଉତ୍ସାହିତ କରିଅଛନ୍ତି, ସେମାନଙ୍କୁ ଆମ୍ଭେମାନେ କୃତଜ୍ଞତା ଜ୍ଞାପନ କରୁଅଛୁଁ ।

ସଂଗ୍ରାହକ

# ସୂଚୀ

୪ । ସଂକ୍ଷିପ୍ତ ଟିପ୍ପଣୀ ଲେଖ—ଗୋଚାରଣ, କଦମ୍ବ, ମଧୁସୂଦନ ।

୫ । ଶିର ବାମ କରେ ଧଇଲେ ନନ୍ଦଯଶୋଦାବାଳ—କେଉଁ ପୌରାଣିକ ଘଟଣାକୁ ଲକ୍ଷ୍ୟ କରି ଏହା କୁହାଯାଇଛି ?

---

## ସ୍ୱାସ୍ଥ୍ୟ ଓ ଜଳବାୟୁ

ସର୍ବଦା ନିରୋଗ ରହିବା ପାଇଁ ଆମ୍ଭମାନଙ୍କୁ ପୁଷ୍ଟିକର ଖାଦ୍ୟ, ପରିଷ୍କୃତ ଲୁଗା ପଟା, ଯଥେଷ୍ଟ ବ୍ୟାୟାମ ଏବଂ ଆରାମ ପ୍ରଭୃତି ଯେପରି ସାହାଯ୍ୟ କରେ, ଠିକ୍ ସେହିପରି ସ୍ଥାନୀୟ ଜଳବାୟୁ ଆମ୍ଭମାନଙ୍କ ସ୍ୱାସ୍ଥ୍ୟୋନ୍ନତି ଦିଗରେ କାର୍ଯ୍ୟ କରେ । ଏହି କାରଣରୁ ଆମ୍ଭେମାନେ ବାସ କରୁଥିବା ସ୍ଥାନର ଜଳବାୟୁ ସର୍ବଦା ପରିଷ୍କୃତ ଓ ସ୍ୱାସ୍ଥ୍ୟପ୍ରଦ ହେବା ଦରକାର ।

ଜଳ ଏବଂ ବାୟୁ ପ୍ରକୃତିଦତ୍ତ ପଦାର୍ଥ ଅଟେ । ବର୍ଷା ସମୟରେ ମୁକ୍ତ ଆକାଶରୁ ପଡ଼ୁଥିବା ଜଳ ଅତି ପରିଷ୍କୃତ ରହେ । ଅତି ଗଭୀର କୂପ ଏବଂ ଝରଣାର ପାଣି ମଧ୍ୟ ନିର୍ମଳ ଥାଏ । ଏପରି ପାଣି ବ୍ୟବହାର କଲେ ଆମ୍ଭମାନଙ୍କର ସ୍ୱାସ୍ଥ୍ୟ ଭଲ ରହିବା କଥା, କିନ୍ତୁ ଅନେକ ସମୟରେ ଏହି ପ୍ରକୃତିଦତ୍ତ ଓ ସ୍ୱାସ୍ଥ୍ୟକର ଜଳ ଆମ୍ଭେମାନେ ସୁବିଧାରେ ପାଉ ନାହିଁ । ଆମ ଦେଶର କୂପ, ନଦୀ ଓ ପୁଷ୍କରିଣୀଗୁଡ଼ିକରେ ଯେଉଁ ସବୁ ପାଣି ମିଳେ, ତାହା ଅପରିଷ୍କୃତ ଓ ସ୍ୱାସ୍ଥ୍ୟ ପକ୍ଷରେ ଅତି ଅହିତକର ଅଟେ । ଏପରି ଦୂଷିତ ପାଣି ବ୍ୟବହାର କରିବା ଯୋଗୁଁ ଆମ ଦେଶର ଅଧିକାଂଶ ଲୋକ ରୁଗ୍ଣ ହୁଅନ୍ତି ।

ସମୁଦ୍ରକୂଳରେ ପ୍ରଚୁର ଗଛ ଥିବା ସ୍ଥାନରେ ଏବଂ ଅତି ଉଚ୍ଚ ଜାଗାରେ ଲମ୍ବା ପଡ଼ିଆରେ ଯେଉଁ ବାୟୁ ମିଳେ, ତାହା ସର୍ବଦା ପରିଷ୍କୃତ ଥାଏ ଏବଂ ସେପରି ବାୟୁ ସେବନ କରିବା ଦ୍ୱାରା ଆମ୍ଭମାନଙ୍କର ସ୍ୱାସ୍ଥ୍ୟ ଭଲ ହୁଏ ।

ସନ୍ତସନ୍ତିଆ ସ୍ଥାନ, ଜଙ୍ଗଲ, ଗୋବର ଓ ଖତ ପ୍ରଭୃତି ମଇଳା, ଚୁଲ୍ଲୀ ଧୂଆଁ ଏବଂ ଦୂଷିତ ପଦାର୍ଥ ପ୍ରଭୃତି ଯୋଗୁଁ ଯେ କୌଣସି ସ୍ଥାନର ଜଳବାୟୁ ଦୂଷିତ ହୁଏ । ଏପରି ସ୍ଥାନରେ ବାସ କରୁଥିବା ଲୋକମାନଙ୍କର ସ୍ୱାସ୍ଥ୍ୟହାନି ଘଟେ ।

ଆମ ଓଡ଼ିଶାର ଅଧିକାଂଶ ପୁରପଲ୍ଲୀ କେବଳ ନଦୀକୂଳ ଧାନଜମି ଓ ଜଙ୍ଗଲ ମଧ୍ୟରେ ରହିଥିବାରୁ ଜଳବାୟୁ ମଧ୍ୟ ସେତେ ସ୍ୱାସ୍ଥ୍ୟକର ନୁହେଁ । ଅଧିକାଂଶ ଘର କେବଳ ସନ୍ତସନ୍ତିଆ ସ୍ଥାନରେ ସ୍ଥାପିତ ହୋଇଅଛି । ପୁରୀ, କଟକ ଓ ବାଲେଶ୍ୱରର ସମୁଦ୍ରକୂଳବର୍ତ୍ତୀ ପଲ୍ଲୀଗୁଡ଼ିକ ବର୍ଷା ଦିନରେ ଯେପରି ବନ୍ୟାଜଳରେ ବୁଡ଼ି ରହେ, ଗ୍ରୀଷ୍ମ ଦିନରେ ଠିକ୍ ସେହିପରି ସେଠାରେ ଜଳକଷ୍ଟ ହୁଏ । ଗଞ୍ଜାମ, କୋରାପୁଟ ଏବଂ ସମ୍ବଲପୁର ଜିଲ୍ଲାର ପଲ୍ଲୀଗୁଡ଼ିକ ଉଚ୍ଚ ପାହାଡ଼ିଆ ସ୍ଥାନରେ ନିର୍ମିତ ହୋଇଅଛି । ଏହି କାରଣରୁ ସେଠାରେ ଗ୍ରୀଷ୍ମ ଦିନରେ ଅତି ଭୟଙ୍କର ଉତ୍ତାପ ଅନୁଭୂତ ହୁଏ ଏବଂ ଲୋକମାନେ ବିଶେଷ କଷ୍ଟ ପାଆନ୍ତି ।

ଓଡ଼ିଶା ପ୍ରଦେଶସ୍ଥ ଆଠ ଦଶଟି ସହରର ଜଳବାୟୁ ମଧ୍ୟ ସେତେ ସ୍ୱାସ୍ଥ୍ୟକର ବୋଲି କୁହାଯାଇ ନ ପାରେ । ଯେଉଁ ସବୁ ସ୍ଥାନରେ ପାଣିକଳ ବସିଛି, ସେଠାରେ ପ୍ରଚୁର ପାଣି ମିଳୁଥିଲେହେଁ ସେହି ସହରର ମଇଳାପାଣି ଉତ୍ତମରୂପେ ନିଷ୍କାସନ କରିବା ପାଇଁ ନାଳର ବ୍ୟବସ୍ଥା ନ ଥିବାରୁ ତାହା ସଡ଼କର ସ୍ଥାନେ ସ୍ଥାନେ

ଜମିରହି ଅତି ଦୁର୍ଗନ୍ଧ ଜାତ କରେ । ତଦ୍ଦ୍ୱାରା ଉକ୍ତ ସ୍ଥାନର ବାୟୁ ଦୂଷିତ ହୁଏ ଏବଂ ନିକଟବର୍ତ୍ତୀ ଲୋକମାନଙ୍କର ସ୍ୱାସ୍ଥ୍ୟ ନଷ୍ଟ କରେ । ଏପରି ଦୂଷିତ ନର୍ଦ୍ଦମାଗୁଡ଼ିକରେ ମାଛି ଓ ମଶା ପ୍ରଭୃତି ଅନିଷ୍ଟକର ଜୀବ ଜାତ ହୋଇ ସ୍ଥାନୀୟ ଲୋକମାନଙ୍କମଧ୍ୟରେ ମ୍ୟାଲେରିଆ ଓ ଉଦର ପ୍ରଭୃତି ରୋଗ ବିସ୍ତାର କରନ୍ତି ।

ଯେଉଁ ସବୁ ସହରରେ ଜଳକଳର ବ୍ୟବସ୍ଥା ନାହିଁ, ସେଠାର ଲୋକମାନେ କେବଳ କୂଅ, ପୋଖରୀ ଏବଂ ନଦୀର ପାଣି ବ୍ୟବହାର କରନ୍ତି । ସେହି ପାଣିରେ ସ୍ନାନ କରନ୍ତି, ଲୁଗା କାଚନ୍ତି ଏବଂ ସେହି ପାଣି ମଧ୍ୟ ପିଅନ୍ତି । କେତେକ ଜାଗାରେ ଲୋକମାନେ ଯେଉଁ ପାଣିରେ ସ୍ନାନ କରନ୍ତି, ତହିଁରେ ନିଜର ଲୁଗା ଧୁଅନ୍ତି ଏବଂ ଗୃହପାଳିତ ପଶୁମାନେ ମଧ୍ୟ ଗାଧାନ୍ତି । ଏହି କାରଣରୁ ସେହି ଜଳ ଦୂଷିତ ହୁଏ ଏବଂ ତଦ୍ଦ୍ୱାରା ଲୋକମାନଙ୍କର ସ୍ୱାସ୍ଥ୍ୟ ନଷ୍ଟ ହୁଏ ।

ଅଧିକାଂଶ ସହରର ଘରଗୁଡ଼ିକ ଅତି ଘେଞ୍ଚାଘେଞ୍ଚି ଭାବରେ ନିର୍ମିତ ହୋଇଅଛି । ଏଣୁ କି ଅଧିକାଂଶ ବାସଗୃହକୁ ମୁକ୍ତ ବାୟୁ ଏବଂ ସୂର୍ଯ୍ୟାଲୋକ ଅବାଧରେ ପ୍ରବେଶ କରି ପାରେ ନାହିଁ । ଗୋଟିଏ ଗୋଟିଏ ଘରେ ଯେତେ ଜଣ ବାସ କରନ୍ତି, ସେ ସମସ୍ତଙ୍କ ପାଇଁ ଯଥେଷ୍ଟ ପରିମାଣ ଘରର ବ୍ୟବସ୍ଥା ମଧ୍ୟ ନାହିଁ । ସହରର ଅଧିକାଂଶ ବାସଗୃହରେ ଥିବା ନର୍ଦ୍ଦମା ଓ ପାଇଖାନା ଅତି ଅପରିଷ୍କୃତ ଅବସ୍ଥାରେ ରଖାଯାଇଥାଏ । ସେଗୁଡ଼ିକ ପ୍ରତିଦିନ ପରିଷ୍କୃତ ରଖିବା ପାଇଁ ବିଶେଷ ବ୍ୟବସ୍ଥା ମଧ୍ୟ କରାଯାଏ ନାହିଁ । ଏହି କାରଣରୁ ଆମର ସହରବାସୀ ସର୍ବଦା ରୁଗ୍ଣ ଦେଖାଯାନ୍ତି ।

ମୁଁ ଦେଖିଥିବା ଓଡ଼ିଶାର ସବୁ ସହରରେ ଅଧିକାଂଶ ଲୋକଙ୍କ ବାସଗୃହର ବାଟରେ ଅତି ଅସ୍ୱାସ୍ଥ୍ୟକର ଓ ପୋଖରୀ ପାଣିପୂର୍ଣ୍ଣ

ନର୍ଦ୍ଦମା ଏବଂ କଣ୍ଟାବୁଦାପୂର୍ଣ୍ଣ ଜଙ୍ଗଲ ରହିଛି । ଘର ଆଗରେ ଥିବା ସଡ଼କରୁ ସର୍ବଦା ଧୂଳି ଉଡ଼ି ଘରର ଜିନିଷଗୁଡ଼ିକୁ ଦୂଷିତ କରେ । ଏପରି ଦାଣ୍ଡ ଓ ବାରି ଉଭୟ ଦିଗରୁ ଦୂଷିତ ଜଳବାୟୁ ଗ୍ରହଣ କରି ଓଡ଼ିଶାର ଅଧିକାଂଶ ସହରବାସୀ ସର୍ବଦା ରୁଗ୍‌ଣ ଦେଖାଯାନ୍ତି ।

ସମଗ୍ର ଓଡ଼ିଶାରେ ପୁରୀ ସହର ଏବଂ ଗଞ୍ଜାମର ଗୋପାଳପୁର ସମୁଦ୍ରକୂଳରେ ଥିବାରୁ ଅତି ସ୍ୱାସ୍ଥ୍ୟକର ସ୍ଥାନ ଅଟେ । ଏ ଦୁଇ ସ୍ଥାନକୁ କେବଳ ଜଳବାୟୁ ପରିବର୍ତ୍ତନ ପାଇଁ ଓଡ଼ିଶାର କେତେକ ସ୍ଥାନରୁ ଏବଂ କଲିକତାରୁ ଲୋକମାନେ ପ୍ରାୟ ଆସନ୍ତି; କିନ୍ତୁ ବିଦେଶାଗତ ଲୋକମାନେ ଏହି ଉତ୍ତମ ଜଳବାୟୁର ଯେପରି ସଦ୍‌ବ୍ୟବହାର କରନ୍ତି ଆମ ଓଡ଼ିଶାର ସ୍ଥାନୀୟ ଲୋକମାନେ ତାହାର ସେପରି ସଦ୍‌ବ୍ୟବହାର କରନ୍ତି ନାହିଁ । ପୁରୀ ସହର ପୂର୍ବଭାରତର ଗୋଟିଏ ପ୍ରସିଦ୍ଧ ତୀର୍ଥସ୍ଥାନ ହେତୁ ଏଠାକୁ ପ୍ରତିଦିନ ଅସଂଖ୍ୟ ଯାତ୍ରୀ ଆସି ଏହାର ଜଳବାୟୁକୁ ସମ୍ପୂର୍ଣ୍ଣ ଦୂଷିତ କରନ୍ତି । ଏହି ଯାତ୍ରୀମାନଙ୍କ ମଧ୍ୟରୁ କେତେକ ଲୋକ ନାନା ପ୍ରକାର ଉତ୍କଟ ରୋଗରେ ପୂର୍ବରୁ ପୀଡ଼ିତ ଥାଇ ଏଠାରେ ରହିବା ସମୟରେ ସେହି ସେହି ରୋଗର ଜୀବାଣୁଗୁଡ଼ିକୁ ବିସ୍ତାର କରି ଦିଅନ୍ତି । ସେହି କାରଣରୁ ପୁରୀ ସହରରେ ପ୍ରାୟ ପ୍ରତିବର୍ଷ ହଇଜା ରୋଗ ଜାତ ହୁଏ । ପୁଣି ଏହି ଯାତ୍ରୀମାନଙ୍କୁ ରଖିବା ପାଇଁ ସ୍ଥାନୀୟ ଲୋକମାନେ ଯେଉଁ ଯାତ୍ରୀ-ବାସ ଘରଗୁଡ଼ିକ କରିଛନ୍ତି, ସେଗୁଡ଼ିକ ଅତି ଅସ୍ୱାସ୍ଥ୍ୟକର ଅବସ୍ଥାରେ ନିର୍ମିତ ହୋଇଥିବାରୁ ତହିଁରେ ରହୁଥିବା ଲୋକମାନେ ସର୍ବଦା ରୁଗ୍‌ଣ ଦେଖାଯାନ୍ତି ।

ପୁରୀ ସହର ପରି ଓଡ଼ିଶାର ଅଧିକାଂଶ ତୀର୍ଥସ୍ଥାନର ଜଳବାୟୁ ଅତି କଳୁଷିତ ଓ ଅସ୍ୱାସ୍ଥ୍ୟକର ବୋଲି ନିଃସନ୍ଦେହରେ କୁହା

ଯାଇପାରେ । ପୁରୀ, ସତ୍ୟବାଦୀ, ଭୁବନେଶ୍ୱର ଓ ଯାଜପୁର ପ୍ରଭୃତି ତୀର୍ଥସ୍ଥାନରେ ଅସଂଖ୍ୟ ଯକ୍ଷ୍ମା, କୁଷ୍ଠ, ଗୋଦର, ମ୍ୟାଲେରିଆ ଏବଂ ଶୋଥ ରୋଗୀ ଦେଖାଯାନ୍ତି । ଏହି ଶ୍ରେଣୀର ରୋଗୀମାନେ କେବଳ ସୁବିଧାରେ ପେଟ ପୋଷିବା ପାଇଁ ଏସବୁ ତୀର୍ଥସ୍ଥାନକୁ ଆସି ରହନ୍ତି । ଆମ ଦେଶରେ ଧର୍ମାନ୍ଧମାନେ ରୋଗୀସେବା ପ୍ରତି ବିଶେଷ ଦୃଷ୍ଟି ନ ଦେଇ କେବଳ ରୋଗୀସଂଖ୍ୟା ବୃଦ୍ଧି କରିବାପାଇଁ ଏ ଶ୍ରେଣୀର ରୋଗୀମାନଙ୍କୁ ଉକ୍ତ ତୀର୍ଥସ୍ଥାନଗୁଡ଼ିକରେ ଖାଦ୍ୟପେୟ ଦେବାର ବ୍ୟବସ୍ଥା କରନ୍ତି । ଏହି କାରଣରୁ ଓଡ଼ିଶାର ପ୍ରତ୍ୟେକ ତୀର୍ଥସ୍ଥାନରେ ବାସ କରୁଥିବା ରୋଗୀମାନେ ସ୍ଥାନୀୟ ଜଳବାୟୁକୁ ସମ୍ପୂର୍ଣ୍ଣରୂପେ କଳୁଷିତ କରନ୍ତି । ସେହି ଦୂଷିତ ଜଳବାୟୁ ବ୍ୟବହାର କରୁଥିବା ଲୋକମାନଙ୍କ ମଧ୍ୟରେ ଏକାଧିକ ଛୁଆଁ ରୋଗ ଅତି ସୁବିଧାରେ ବ୍ୟାପିଯାଏ ।

ସୁସ୍ଥ ରହିବାପାଇଁ ସମସ୍ତେ ଇଚ୍ଛା କରନ୍ତି; କିନ୍ତୁ କି କି ନିୟମ ପାଳନ କଲେ ନିଜେ ଭଲ ରହିବା ସଙ୍ଗେ ସଙ୍ଗେ ଅନ୍ୟମାନଙ୍କର ସ୍ୱାସ୍ଥ୍ୟୋନ୍ନତି ହେବ, ସେଇତକ ଆମ ଦେଶବାସୀ ଜାଣନ୍ତି ନାହିଁ । ନିଜେ ଭଲ ଖାଇବ, ଭଲ ପିନ୍ଧିବ, ଭଲ ଘର କରି ରହିବ, ଭଲ ଜଳବାୟୁ ବ୍ୟବହାର କରିବ ଏବଂ ସର୍ବଦା ସୁସ୍ଥ ଜୀବନ କାଟି ଦୀର୍ଘାୟୁ ହେବ—ଏହି ଆଶା ଯେଉଁମାନେ କରନ୍ତି, ସେମାନଙ୍କୁ ଠିକ୍ ସେହି ନିୟମରେ ଅନ୍ୟମାନଙ୍କପାଇଁ ନିଜର ଶକ୍ତି ଓ ସୁବିଧା ଅନୁସାରେ ବ୍ୟବସ୍ଥା କରିବାକୁ ହେବ । ଯେଉଁ ପୁଷ୍କରିଣୀର ପରିଷ୍କୃତ ପାଣି ନିଜେ ବ୍ୟବହାର କରିବାକୁ ଇଚ୍ଛା କର, ସେହି ପାଣିରେ ନିଜେ ଗାଧୋଇବ ନାହିଁ କି ନିଜର ଲୁଗାପଟା ଧୋଇ ତାହା ଦୂଷିତ କରିବ ନାହିଁ । ତଦ୍ଦ୍ୱାରା ଅନ୍ୟ ଲୋକମାନେ ସେହି ପରିଷ୍କୃତ ପାଣି ବ୍ୟବହାର କରି ନିରୋଗ

ହେବେ । ସର୍ବଦା ପରିଷ୍କୃତ ରହିବ, ପୁଷ୍ଟିକର ଖାଦ୍ୟ ଖାଇବା, ନିର୍ମଳ ଜଳବାୟୁ ସେବନ କରିବା, ଯଥେଷ୍ଟ ବ୍ୟାୟାମ କରିବା ଓ ଆରାମ ନେବାପାଇଁ ଅନ୍ୟଙ୍କୁ ଉପଦେଶ ଦେବା ସଙ୍ଗେ ସଙ୍ଗେ ନିଜେ ସେସବୁ ନିୟମ ପାଳନ କରିବ । ସର୍ବଦା ନିଜ ଆଦର୍ଶରେ ଅନ୍ୟ ଲୋକମାନଙ୍କର ସ୍ୱାସ୍ଥ୍ୟୋନ୍ନତି କରାଇବା ଦିଗରେ ବିଶେଷ ଦୃଷ୍ଟି ଦେବ । ତାହାହେଲେ ଏ ଦେଶବାସୀ ସର୍ବଦା ସୁସ୍ଥ ଓ ସବଳ ରହି ପାରିବେ ।

ଓଡ଼ିଶାର ସାଧାରଣ ଜଳବାୟୁ ସେତେ ସ୍ୱାସ୍ଥ୍ୟକର ନୁହେଁ ହେଲେହେଁ ନିମ୍ନ କେତେକ ସ୍ଥାନର ଜଳବାୟୁ ସ୍ୱାସ୍ଥ୍ୟୋନ୍ନତି ଦିଗରେ ବିଶେଷ ସାହାଯ୍ୟ କରୁଥିବାର ଦେଖାଯାଏ । ଯଥା— ଭୁବନେଶ୍ୱର, ଅତ୍ରି, ଚିଲିକା ଦ୍ୱୀପପୁଞ୍ଜର ନିବା, ଟିକିପ ପ୍ରଭୃତି ସ୍ଥାନ; ତପ୍ତପାଣି; ଖଲିକୋଟ, ଜୟପୁରର କେତେଗୋଟି ଉଷ୍ଣପ୍ରସ୍ରବଣ ପ୍ରଭୃତି ।

ଏସବୁ ସ୍ଥାନର ଜଳରେ କେତେକପ୍ରକାର ଗନ୍ଧକ ଓ ଅନ୍ୟ ଧାତୁମିଶ୍ରିତ ପଦାର୍ଥ ଅଛି । ଏଣୁ ଏହାକୁ ପାନ କଲେ ଏବଂ ଏହି ପାଣିରେ ଗାଧୋଇଲେ ଦେହର ବାତବେଦ, ଅଜୀର୍ଣ୍ଣ ଓ ଆମାଶୟ ପ୍ରଭୃତି ଭଲ ହୁଏ । କଲିକତାର ଅନେକ ଧନୀ ରୋଗୀ ଭୁବନେଶ୍ୱରର କେଦାରଗୌରୀ କୁଣ୍ଡରୁ ପାଣି ନେଇ ପ୍ରତିଦିନ ବ୍ୟବହାର କରନ୍ତି । କେତେକ ରୋଗୀ ଆସି ଏଠାରେ ମାସାଧିକ କାଳ ରହି ସ୍ୱାସ୍ଥ୍ୟଲାଭ କରନ୍ତି । ଭୁବନେଶ୍ୱରରେ ଏକାଧିକ ସ୍ୱାସ୍ଥ୍ୟନିବାସ ମଧ୍ୟ ନିର୍ମିତ ହୋଇଅଛି ।

ଭୁବନେଶ୍ୱର ବ୍ୟତୀତ ଓଡ଼ିଶାର ଅନ୍ୟ କୌଣସି ସ୍ୱାସ୍ଥ୍ୟପ୍ରଦ ସ୍ଥାନରେ ରୋଗୀମାନଙ୍କ ରହିବାପାଇଁ ସୁବିଧାଜନକ ବାସଗୃହ ନାହିଁ, କିମ୍ବା ଅତ୍ରି, ତପ୍ତପାଣି ଓ ଚିଲିକା ଦ୍ୱୀପପୁଞ୍ଜର ସ୍ୱାସ୍ଥ୍ୟକର ସ୍ଥାନପ୍ରତି

କାହାରି ହେଲେ ବିଶେଷ ଦୃଷ୍ଟି ପଡ଼ୁ ନାହିଁ । ମୋର ବ୍ୟକ୍ତିଗତ ଅନୁଭୂତିରୁ ମୁଁ ସ୍ପଷ୍ଟ କହିପାରେ ଯେ, ଚିଲିକା ମଧ୍ୟସ୍ଥ ଦ୍ୱୀପପୁଞ୍ଜର ଏକାଧିକ ସ୍ଥାନରେ ଯେପରି ଉତ୍କୃଷ୍ଟ ଜଳବାୟୁ ମିଳେ, ସେହି ଦୃଷ୍ଟିରେ ସେହି ସେହି ସ୍ଥାନରେ ଏକାଧିକ 'ସ୍ୱାସ୍ଥ୍ୟନିବାସ' ନିର୍ମାଣ କରି ସେଠାରେ ଓଡ଼ିଶାର ସବୁ ଶ୍ରେଣୀର ଯକ୍ଷ୍ମା ଓ ଶ୍ୱାସରୋଗୀଙ୍କୁ ରଖାଇବା ଉଚିତ । ସମଗ୍ର ଓଡ଼ିଶାରେ ଯକ୍ଷ୍ମା ଓ ଶ୍ୱାସରୋଗ ନିବାରଣ ପାଇଁ ଏପରି ହିତକର ଓ ସ୍ୱାସ୍ଥ୍ୟପ୍ରଦ ସ୍ଥାନ ଅନ୍ୟତ୍ର ନାହିଁ ବୋଲି କୁହାଯାଇ ପାରେ । ଅତ୍ରି ଏବଂ ତପ୍ତପାଣି ପ୍ରଭୃତି ସ୍ଥାନରେ ମଧ୍ୟ ରୋଗୀମାନଙ୍କ ରହିବା ପାଇଁ ସୁବିଧା କରିବାକୁ ହେବ । ତାହେଲେ ପ୍ରଦେଶର ବିଭିନ୍ନ ସ୍ଥାନରେ ଥିବା ରୋଗୀମାନେ ସେହି ସେହି ସ୍ଥାନକୁ ଯାଇ ସେଠାରେ ଦିନାକେତେ ରହି ନିଜ ସ୍ୱାସ୍ଥ୍ୟର ଉନ୍ନତି କରି ପାରନ୍ତି ।

ସ୍ୱାସ୍ଥ୍ୟଲାଭ ପାଇଁ ଜଳବାୟୁ ପରିବର୍ତ୍ତନ କରିବା ଅଭ୍ୟାସ ଆମ ଦେଶବାସୀଙ୍କ ମଧ୍ୟରେ ଏପର୍ଯ୍ୟନ୍ତ ବ୍ୟାପି ନାହିଁ ସତ, କିନ୍ତୁ ଭାରତର ଏକାଧିକ ନେତା ଏବଂ ଧନୀବ୍ୟକ୍ତି ଯେପରି ଜର୍ମାନୀ ଓ ଇଂଲଣ୍ଡର ପ୍ରସିଦ୍ଧ ସ୍ୱାସ୍ଥ୍ୟନିବାସକୁ ଯାଇ, ସେଠାରେ ଥିବା ଉତ୍କୃଷ୍ଟ ଜଳବାୟୁ ସେବନ କରି ସ୍ୱାସ୍ଥ୍ୟଲାଭ କରୁଥିବାର ଦେଖାଯାଏ, ସେହି ଦୃଷ୍ଟିରେ ଆମ ଓଡ଼ିଶା ସରକାର ଏହି ପ୍ରଦେଶରେ ଥିବା ବିଭିନ୍ନ ଉଷ୍ଣପ୍ରସ୍ରବଣ ଓ ଜଳପ୍ରପାତ ଏବଂ ଚିଲିକା ଓ ସମୁଦ୍ରକୂଳବର୍ତ୍ତୀ କେତେକ ସ୍ଥାନରେ ଏହିପରି ଏକାଧିକ 'ସ୍ୱାସ୍ଥ୍ୟନିବାସ' ନିର୍ମାଣ କରାଇ ସେହି ସେହି ସ୍ଥାନ ପ୍ରତି ଓଡ଼ିଶା ତଥା ଭାରତବାସୀଙ୍କ ଦୃଷ୍ଟି ଆକର୍ଷଣ କରିବା ଉଚିତ ମନେ କରୁଁ । ଏସବୁ ସ୍ଥାନରେ ରହିବା ପାଇଁ ସୁବ୍ୟବସ୍ଥା କଲେ ସେହି ସ୍ଥାନରେ ଥିବା ଉଷ୍ଣପ୍ରସ୍ରବଣଗୁଡ଼ିକର ପ୍ରସିଦ୍ଧି ବ୍ୟାପିବା ସଙ୍ଗେ ସଙ୍ଗେ କେବଳ ସ୍ୱାସ୍ଥ୍ୟକର ଜଳବାୟୁ ପାଇଁ ମଧ୍ୟ ଓଡ଼ିଶା ଭାରତବିଖ୍ୟାତ

ହୋଇ ପାରେ । ଏ ବିଷୟରେ ଶିକ୍ଷିତ ବ୍ୟକ୍ତି ଏବଂ ଦେଶର ସରକାର ଓ ସ୍ୱାସ୍ଥ୍ୟବିଭାଗର କର୍ତ୍ତୃପକ୍ଷଙ୍କର ଶୁଭଦୃଷ୍ଟି ପଡ଼ିବା ଆଶା କରୁଁ ।

ଡାକ୍ତର ଶ୍ରୀ ରାଧାଚରଣ ପଣ୍ଡା, ଏଲ୍, ଏମ୍, ପି,

## ପ୍ରଶ୍ନ

୧ । କି କି ଉପାୟ ଅବଲମ୍ବନ କଲେ ତୁମ୍ଭେ ସୁସ୍ଥ ରହିପାରିବ ?

୨ । ପୁରୀ ଏବଂ ଗୋପାଳପୁର ଆମ ପ୍ରଦେଶରେ ସ୍ୱାସ୍ଥ୍ୟକର ସ୍ଥାନ ହେଲେ ସୁଦ୍ଧା ଉକ୍ତ ସ୍ଥାନ ଦୁଇଟିର ଜଳବାୟୁ ଦିନୁଦିନ ଖରାପ ହୋଇଯିବାର କାରଣ କଣ ?

୩ । ସନ୍ଧିବିଚ୍ଛେଦ କରି ଟିପ୍ପଣୀ ଲେଖ—ଅଛି, କେଦାରଗୌରୀ, ଚନ୍ଦ୍ରଭାଗା ।

୪ । ବିପରୀତାର୍ଥବୋଧକ ଶବ୍ଦ ଲେଖ—

ନିରୋଗ, ଗହ୍ଣିର, ଦୁର୍ଗନ୍ଧ, ବିଦେଶ, ପୂର୍ଣ୍ଣ ଓ ପ୍ରଚୁର ।

୫ । 'ଡାକ୍ତର' ଶବ୍ଦ ପରି ଆଉ ଦଶଗୋଟି ଶବ୍ଦ କହ ।

---

## ସୂର୍ଯ୍ୟ ମନ୍ଦିର

ଉତ୍କଳର ପୁଣ୍ୟ କ୍ଷେତ୍ରମାନଙ୍କ ମଧ୍ୟରେ କୋଣାର୍କ ଅନ୍ୟତମ । ଏହା ପୁରୀଠାରୁ ଉତ୍ତର-ପୂର୍ବରେ ୨୨ ମାଇଲ ଦୂରରେ ଅବସ୍ଥିତ । କୋଣାର୍କର ଆଉ ସେ ପୂର୍ବ ଗୌରବ ଓ ଅତୀତ ବିଭବ ନାହିଁ । ଶତ ଶତ ଯାତ୍ରୀ ଅର୍କ ପୂଜା ଦର୍ଶନ କରି ପ୍ରାଣ ପୂତ କରିବା ମାନସରେ ଆଉ କୋଣାର୍କ ପଥରେ ପଥିକ ହେଉ ନାହାନ୍ତି । ଆଜି ଅଛି କେବଳ କୋଣାର୍କ ମନ୍ଦିରର ଭଗ୍ନାବଶେଷ; ତଥାପି ଜରାଜୀର୍ଣ୍ଣ କୋଣାର୍କ ମନ୍ଦିରର ଯେଉଁ ଅଂଶ ବର୍ତ୍ତମାନ ରହିଅଛି, ତାହାର ଦର୍ଶନରେ ଦର୍ଶକ ଓ ଭାବୁକ ବିସ୍ମିତ ହୁଅନ୍ତି ।

ଏହି କାରୁକାର୍ଯ୍ୟଖଚିତ ପ୍ରସିଦ୍ଧ ମନ୍ଦିରଟି ଲଙ୍ଗୁଳା ନରସିଂହ ଦେବଙ୍କ ରାଜତ୍ୱ କାଳରେ ୧୨୭୮ ଖ୍ରୀଷ୍ଟାବ୍ଦରେ ସଦାଶିବ ସାମନ୍ତ-



ରାୟଙ୍କ ତତ୍ତ୍ୱାବଧାନରେ ଅର୍କପୂଜା ପାଇଁ ନିର୍ମିତ ହୋଇଥିଲା । ବାରଶହ ଶିଳ୍ପୀ ପ୍ରାୟ **୧୨** ବର୍ଷ ଅକ୍ଳାନ୍ତ ପରିଶ୍ରମ କରି ଉତ୍କଳ ଜାତିର ଏହି ଗୌରବସ୍ତମ୍ଭ କୋଣାର୍କ ମନ୍ଦିରକୁ ନିର୍ମାଣ କରିଥିଲେ ଏବଂ ଏହି ମନ୍ଦିର ନିର୍ମାଣ ସକାଶେ କୋଟି କୋଟି ମୁଦ୍ରା ବ୍ୟୟିତ ହୋଇଥିଲା ।

## ପ୍ରଶ୍ନ

୧ । ନିମ୍ନଲିଖିତ ପଦ୍ୟାଂଶର ଅର୍ଥ ସରଳଭାଷାରେ ଲେଖ—

"ଅଳସ ଲୋକର ପାଖକୁ ନ ପଶଇ ସମ୍ପଦ ।
ମଧୁ ଆସି ମୁଖେ ନ ପଶେ ଶୋଇଥିଲେ ଷଟ୍‌ପଦ ।"

୨ । ବିପରୀତ ଲିଙ୍ଗ ଲେଖ— ମାମା, ଇନ୍ଦ୍ର, ପକ୍ଷୀ ଓ ଭିଖାରୀ ।

୩ । ନିମ୍ନଲିଖିତ ବିଶେଷଣ ପଦଗୁଡ଼ିକୁ ବିଶେଷ୍ୟରେ ପରିଣତ କର— ଅଳସ, ପ୍ରଚୁର, ପ୍ଲାବିତ, ବିଶଦ ଓ ସ୍ୱଚ୍ଛନ୍ଦ ।

---

## ବିଜ୍ଞାନ ଓ ତାହାର ବ୍ୟବହାର

ଆଜକାଲି ବିଜ୍ଞାନର ଯୁଗ । ପୃଥିବୀରେ ସବୁଆଡ଼େ ବିଜ୍ଞାନର ଜୟଧ୍ୱନି ପଡ଼ିଅଛି । ଇଂଲଣ୍ଡ, ଆମେରିକା, ରୁଷିଆ ପ୍ରଭୃତି ରାଜ୍ୟରେ ବୈଜ୍ଞାନିକମାନେ ଏହି ବିଜ୍ଞାନଶାସ୍ତ୍ରରେ ପାରଦର୍ଶିତା ଲାଭ କରି ଖୁବ୍ ସୁନାମ ଅର୍ଜନ କରିଅଛନ୍ତି । ନୂଆ ନୂଆ ତଥ୍ୟ ଆବିଷ୍କାର ହେବାଦ୍ୱାରା କେତେ ଅଦ୍ଭୁତ ଓ ଆଶ୍ଚର୍ଯ୍ୟଜନକ ଜିନିଷ ଆମ୍ଭମାନଙ୍କର ଦୃଷ୍ଟିଗୋଚର ହେଉଅଛି । ଏହାଦ୍ୱାରା ଲୋକମାନଙ୍କର ନାନା ପ୍ରକାର ସୁବିଧା ହେବା ସଙ୍ଗେ ସଙ୍ଗେ ସୁଖସମୃଦ୍ଧି ବଢ଼ୁଅଛି । ଅପରପକ୍ଷରେ ଧ୍ୱଂସ କରିବାର ପ୍ରଣାଳୀ ମଧ୍ୟ ଅନେକ ଗୁଣରେ ବଢ଼ି ଯାଇଅଛି । ଶହେ ବର୍ଷ ତଳର ମାନବସମାଜ ପ୍ରତି ଦୃଷ୍ଟି ଦେଲେ ଦେଖାଯିବ ଯେ, ସେତେବେଳେ ଲୋକମାନେ ଅନେକ ଅସୁବିଧାରେ ଥିଲେ । ମଟର, ରେଲ, ବ୍ୟୋମଯାନ ପ୍ରଭୃତି ନ ଥିଲା, କି ଆଜକାଲି ପରି ବଡ଼ବଡ଼ କଳକାରଖାନାପୂର୍ଣ୍ଣ ସହର ନ ଥିଲା । ସେତେବେଳେ କଟକରୁ ପୁରୀ ଯିବାକୁ ହୁଏ ତ ସପ୍ତାହେ ଲାଗିଯାଉଥିଲା । ମୁଁ ଶୁଣିଅଛି,

ପ୍ରାୟ ଅଶୀ ବର୍ଷ ତଳେ କଟକରୁ ଦଳେ ଲୋକ ଗଙ୍ଗାସ୍ନାନ ଉଦ୍ଦେଶ୍ୟରେ କଲିକତା ବାହାରିଲେ । ସେମାନଙ୍କୁ ସେଠାରେ ପହଞ୍ଚିବା ପାଇଁ ପ୍ରାୟ ମାସେ ଲାଗିଯାଇଥିଲା । ଯାତ୍ରାକାଳରେ ସେମାନେ ନିଜ ଜୀବନକୁ ପାଣି ଛଡ଼ାଇ ଦେଇଥିଲେ ଏବଂ ସେମାନଙ୍କ ଘରେ କାନ୍ଦବୋବାଳି ପଡ଼ି ଯାଇଥିଲା । କାରଣ ଏହି ତୀର୍ଥଯାତ୍ରୀମାନେ ଫେରିବେ ବୋଲି କେହି ଆଶା କରୁ ନ ଥିଲେ । ଦୁର୍ଗମ ପଥ, ପୁଣି ଚୋର ଡକାୟତ ଓ ବ୍ୟାଘ୍ର ଭାଲୁକ ପ୍ରଭୃତି ହିଂସ୍ର-ଜନ୍ତୁମାନଙ୍କର ଉପଦ୍ରବ; ଏଥିରେ ବା ଜୀବନର ଆଶା କିଏ ଥାଇ-ପାରେ । ପ୍ରାୟ ପଚିଶ ଜଣ ତୀର୍ଥଯାତ୍ରୀଙ୍କ ମଧ୍ୟରୁ କୋଡ଼ିଏ ଜଣ ନିରାପଦରେ ଫେରିଥିଲେ । ଅଶୀ ବର୍ଷ ତଳେ ଦେଶର ଅବସ୍ଥା ଏହିପରି ଥିଲା, କିନ୍ତୁ ଆଜି ଅବସ୍ଥାର କି ପରିବର୍ତ୍ତନ ହୋଇଅଛି । କଟକରୁ ରାତି ନଅଟା ବେଳେ ଖାଇ ପିଇ ରେଲରେ ଶୋଇଲେ ପରଦିନ ସକାଳେ କଲିକତାରେ ନିଦ ଭାଙ୍ଗୁଅଛି । କଲିକତାରେ କାମ ଦାମ ଶେଷ କରି ସିନେମା ଥିଏଟର ଦେଖି ସେହି ଦିନ ସଞ୍ଜ ରେଲରେ ବସିଲେ ପରଦିନ ପୁନରପି କଟକରେ ପହଞ୍ଚି ହେଉ-ଅଛି । ଦିନକ ମଧ୍ୟରେ ଯେ ଜଣେ ଲୋକ ଏତେ କାମ କରିପାରେ, ଏହା କେହି ବିଶ୍ୱାସ କରି ପାରିବେ ନାହିଁ ।

ଏ ତ ଗଲା ରେଲକଥା । ଉଡ଼ାଜାହାଜ ତୁଳନାରେ ଆଜି ରେଲ ପୁରୁଣା ହୋଇଗଲାଣି । ଆଉ କିଛିଦିନ ଗଲେ ଉଡ଼ା ଜାହାଜର ପ୍ରସାର ଏତେ ବେଶି ହୋଇଯିବ ଯେ, ଜଣେ କଟକରେ ସକାଳ ଛଅଟାରେ ନିଜ ଘରେ ଚା ଖାଇ ଉଡ଼ାଜାହାଜରେ ବସିଲେ ଆଠଟା ବେଳେ କଲିକତାରେ ପହଞ୍ଚିଯିବ । ସେଠାରେ ଗାଧୋଇ ଜଳଖିଆ ଖାଇ [illegible] ସହିତ କିଛି ଜରୁରୀ କଥାବାର୍ତ୍ତା ସାରି ଯଦି ଘଣ୍ଟାକ ପରେ

ଉଡ଼ାଜାହାଜରେ ବସେ ତାହାହେଲେ ପ୍ରାୟ ଦିନ ଦୁଇଟା ବେଳକୁ ସେ ଦିଲ୍ଲୀରେ ପହଞ୍ଚିବ । ଦିଲ୍ଲୀରେ ଭାତ ଖାଇ ବନ୍ଧୁମାନଙ୍କ ସହିତ କିଛି ସମୟ କଥୋପକଥନରେ କଟାଇ ପୁଣି ତିନିଟା ବେଳେ ବାହାରିଲେ ସନ୍ଧ୍ୟା ସମୟକୁ ବମ୍ବେରେ ପହଞ୍ଚ ପାରିବ ଓ ସେଠାରେ କାର୍ଯ୍ୟ ଶେଷ କରି ପୁଣି ବାହାରି ସେହି ଦିନରେ କଟକରେ ପହଞ୍ଚ ପାରିବ ଏବଂ ସକାଳୁ ଉଠି ପୁଣି ନିଜ ଘରେ ଗୃ ଖାଇ ବସିବ । କେଡ଼େ ବିସ୍ମୟକର ବ୍ୟାପାର ! କିଏ କଳ୍ପନା କରି ପାରିବ ଯେ, ଏହି ଲୋକ ହଜାର ହଜାର ମାଇଲ ଦୂରକୁ ଯାଇ କଥାବାର୍ତ୍ତା କରି ଫେରି ଆସିଅଛି । ଅଶୀ ବର୍ଷ ତଳେ ଯେଉଁ ଦଳଟି ଗଙ୍ଗାସ୍ନାନ ଉଦ୍ଦେଶ୍ୟରେ ବାହାରିଥିଲେ, ସେମାନଙ୍କୁ ଯଦି କେହି ଭବିଷ୍ୟତ-ବାର୍ତ୍ତା ଶୁଣାଇଥାନ୍ତା ଯେ, ଆଜି ଅଶୀ ବର୍ଷ ପରେ ଭ୍ରମଣ ଏହିପରି ଅନାୟାସସାଧ୍ୟ ହୋଇ ପାରିବ ସେମାନେ କଅଣ ବିଶ୍ୱାସ କରି-ଥାନ୍ତେ ? ବରଂ ଏହା ପାଗଳର ପ୍ରଳାପ ବୋଲି ନିଶ୍ଚୟ ଭାବିଥାନ୍ତେ । ମାତ୍ର ଅଶୀ ବର୍ଷ ତଳେ ସେମାନଙ୍କର ଯାହା କଳ୍ପନାର ଅତୀତ ଥିଲା ଆଜି ତାହା ସମ୍ଭବପର ହୋଇ ପାରିଅଛି । ଏହା କଅଣ କମ୍ ଆଶ୍ଚର୍ଯ୍ୟର କଥା !

ଏ ସବୁ ବିଜ୍ଞାନର କୃତିତ୍ୱ । ଆଜିକାଲି ବୈଜ୍ଞାନିକ ଯୁଗରେ ଦୂରତାର ମୂଲ୍ୟ କିଛି ନାହିଁ । ଜଣେ ଲୋକ ପୁରୀରେ ରହି କଟକରେ ବ୍ୟବସାୟ କରିପାରେ । ଦଶଟାବେଳେ ଖାଇ ଉଡ଼ାଜାହାଜରେ ବସିଲେ ସାଢ଼େଦଶଟାରେ କଟକରେ କଚେରୀରେ କାମ କରି ପାରିବ ଓ ଚାରିଟାବେଳେ ବାହାରି ସାଢ଼େଚାରିଟାରେ ପୁଣି ଘରେ ପହଞ୍ଚ ପାରିବ । ଜଣେ ଲୋକକୁ ଦେଢ ମାଇଲ ଗଳିଗଳି ଯିବାରେ ସମୟ ଲାଗିବ, ଉଡ଼ାଜାହାଜରେ ତିରିଶ ମାଇଲ ସେତିକି ସମୟରେ ଯାଇ ହେବ । ଦୂରତାକୁ ଖାଲି ଯେ ଆମ୍ଭେମାନେ ଉଡ଼ାଜାହାଜଦ୍ୱାରା

ଏତିକି ତାହା ନୁହେଁ, ବିଜ୍ଞାନ ଆମ୍ଭମାନଙ୍କ ହାତରେ ଆହୁରି ଅନେକ ନୂତନ ସାମଗ୍ରୀ ଦେଇପାରିଅଛି । କୌଣସି ଏକ ସ୍ଥାନରେ ବସି ଟେଲିଫୋନରେ ହଜାର ହଜାର କୋଶ ଦୂରରେ ଥିବା ଲୋକ-ମାନଙ୍କ ସଙ୍ଗରେ ଆନନ୍ଦରେ କଥାବାର୍ତ୍ତା ହୋଇ ପାରୁଅଛୁଁ ।

ଟେଲିଫୋନକୁ ଓଠ ଓ କାନ ପାଖରେ ରଖି ଡାକିଲେ ଦିଲ୍ଲୀର ଲୋକ ଜବାବ ଦେଉଅଛି । କଟକର ଲୋକ ଖବର ଦେଉଅଛି । ସବୁ ସମ୍ବାଦ ପାଇ ଆମ୍ଭେମାନେ ସେହି ଅନୁସାରେ କାମ କରି ପାରୁଅଛୁଁ । ବେତାର ଯନ୍ତ୍ରରେ ଲଣ୍ଡନ, ଆମେରିକା, ଚାଇନା, ଜାପାନ ପ୍ରଭୃତି ଦୂରଦୂର ଦେଶର ବାର୍ତ୍ତା ଏକ ମୁହୂର୍ତ୍ତରେ ଶୁଣି ପାରୁଅଛୁଁ । ଲଣ୍ଡନରେ ଯୁଦ୍ଧ ହେଲା ନଅଟା ବେଳେ; ଆମ୍ଭେମାନେ ଖବର ପାଇଲୁଁ ନଅଟା କେତେ ମିନିଟ୍‌ରେ । ଆମେରିକାରେ ଜଣେ [illegible] ହେଉ ଶପୁର । ପାଞ୍ଚଟା ବେଳେ ଖବର ପାଇଲୁଁ ତାହାଙ୍କର [illegible] ଘଣ୍ଟାରେ, ପୁଣି ପନର ମିନିଟ୍‌ରେ ତାହାଙ୍କର ମୃତ୍ୟୁ ହେଲା ଏହି ଯନ୍ତ୍ର ସାହାଯ୍ୟରେ ଜଣାଗଲା । ତେବେ ଦୂରତାର ଅର୍ଥ ଆଉ ରହିଲା କେଉଁଠି ? ଖାଲି ଏତିକି ନୁହେଁ—ହଜାର ହଜାର ମାଇଲ ଦୂରରୁ ତାହା ଶୁଣି ବୈଜ୍ଞାନିକମାନେ ସନ୍ତୁଷ୍ଟ ନୁହନ୍ତି । ଟେଲିଭିଜନ୍ ନାମକ ଯନ୍ତ୍ର ସାହାଯ୍ୟରେ ସବୁ ଘଟଣା ଆଖିରେ ଦେଖିବା ନିମିତ୍ତ ମଧ୍ୟ ବନ୍ଦୋବସ୍ତ ହେଉଅଛି । ଯେଉଁ ଲୋକ କଥାବାର୍ତ୍ତା କରୁଅଛି, ତାହାକୁ ଏହି ଯନ୍ତ୍ର ସାହାଯ୍ୟରେ ଦେଖି ହେବ ।

ବାର୍ଣ୍ଣାଡ୍ ଶା ତାଙ୍କର ଗୋଟିଏ ନାଟକରେ ଲେଖିଅଛନ୍ତି ଯେ, କିଛି ଦିନ ମଧ୍ୟରେ ବିଜ୍ଞାନ ଏତେ ଦୂର ଉନ୍ନତି କରିବ ଯେ, ଦୂରତାର ପ୍ରଶ୍ନ ଏକାବେଳକେ ଲୋପ ପାଇବ । ସେତେବେଳକୁ ସମସ୍ତ ପୃଥିବୀର ରାଜଧାନୀ ଗୋଟିଏ ଯାଗାରେ ରହିବ । ପୃଥିବୀର

ସୃଷ୍ଟିଆଡ଼େ ଭିନ୍ନ ଭିନ୍ନ ନଗରର ମନ୍ତ୍ରିମାନେ ଥିଲେ ସୁଦ୍ଧା ବେତାର ଯନ୍ତ୍ର ଓ ଟେଲିଭିଜନ୍ ସାହାଯ୍ୟରେ ସେମାନଙ୍କର ଏକତ୍ର ସମ୍ମେଳନ ଲକ୍ଷ ରାଜଧାନୀରେ ସମ୍ଭବ ହୋଇ ପାରିବ, କିନ୍ତୁ ସମସ୍ତେ ଭିନ୍ନ ଭିନ୍ନ ଯାଗାରେ ଥିବେ । ପରସ୍ପର ମଧ୍ୟରେ ହଜାର ହଜାର ମାଇଲ ବ୍ୟବଧାନ ଥିଲେ ସୁଦ୍ଧା ଝାଲ୍ଲି କଳ ମୋଡ଼ିଲେ ପରସ୍ପର ପରସ୍ପରଙ୍କୁ ଦେଖି ପାରିବେ ।

ଏତିକି ନୁହେଁ, ବିଜ୍ଞାନ ଆହୁରି ଅନେକ ପ୍ରକାର ଅଦ୍ଭୁତ ଜିନିଷ ବାହାର କରି ପାରିଅଛି । ବିଜ୍ଞାନର ଏ ସବୁ ଉପକାର ବିଷୟ ଚିନ୍ତା କରି ଆନନ୍ଦରେ ବିଭୋର ହେବା ସଙ୍ଗେ ସଙ୍ଗେ ତାର ଅତି ଅପକାରଗୁଡ଼ିକ ମଧ୍ୟ ଆଖି ଆଗରେ ନାଚିଯାଏ । ଆମ ସମକ୍ଷରେ ଯେଉଁ ପୃଥିବୀବ୍ୟାପୀ ଭୟଙ୍କର ଯୁଦ୍ଧ ହୋଇଗଲା, ସେଥିପାଇଁ ବିଜ୍ଞାନ ଦାୟୀ କହିଲେ ଅତ୍ୟୁକ୍ତି ହେବ ନାହିଁ । ୧୯୧୪ ରେ ଯେଉଁ ମହାଯୁଦ୍ଧ ହୋଇଥିଲା, ତାହା ୫୦ ବର୍ଷ ତଳର ଯେ କୌଣସି ବଡ଼ ଯୁଦ୍ଧଠାରୁ ଅନେକ ଗୁଣରେ ଭୟଙ୍କର ଏବଂ ୧୯୩୯ ଠାରୁ ୧୯୪୫ ମସିହା ପର୍ଯ୍ୟନ୍ତ ଯେଉଁ ମହାଯୁଦ୍ଧ ହେଲା ତାହା ଗତ ମହାଯୁଦ୍ଧଠାରୁ ସହସ୍ର ଗୁଣରେ ଭୟାବହ । ପୂର୍ବେ ସୈନିକମାନେ ଖଣ୍ଡା ତରବାରି ଧରି ଘୋଡ଼ା ହାତୀ କିମ୍ବା ରଥରେ ଚଢ଼ି ଅଥବା ପଦାତିକରୂପେ ଯୁଦ୍ଧ କରୁଥିଲେ । ସୈନ୍ୟ ସୈନ୍ୟ ସହିତ ଯୁଦ୍ଧରେ ବ୍ୟାପୃତ ରହୁଥିଲା । ନିରସ୍ତ୍ର ନର ନାରୀ, ବୃଦ୍ଧ ଓ ବାଳକ ବାଳିକାଙ୍କୁ କେହି ଆକ୍ରମଣ କରୁ ନ ଥିଲା । କିନ୍ତୁ ଆଜିକାଲି ଯୁଦ୍ଧରେ ସେ ମତ ନାହିଁ । ଆକାଶ-ମାର୍ଗରେ ବ୍ୟୋମଯାନ ହଜାର ହଜାର ସଂଖ୍ୟାରେ ଆସି ବୋମା ବର୍ଷି ଦେଇ ଯାଉଅଛି । ଯାହା ଉପରେ ପଡ଼ିଲା ତାର ହିସାବ କେହି ରଖେ ନାହିଁ । ରୋଗୀମାନେ ରୋଗଯନ୍ତ୍ରଣାରେ ଛଟପଟ ହେଉଥିବା

ବେଳେ ଉପରୁ ସର୍ବଗ୍ରାସୀ ବୋମା ଆସି ସେମାନଙ୍କୁ ଧୂଳି କରି ଦେଇଯାଏ କିମ୍ବା ଆହୁରି କ୍ଷତବିକ୍ଷତ କରି ଦିଏ । ନିଷ୍ପାପ ବାଳକ-ବାଳିକାମାନେ ସରଳଭାବରେ ହସି ହସି ଖେଳୁଥିବାବେଳେ ହଠାତ ଆକାଶମାର୍ଗରୁ ସେମାନଙ୍କ ଉପରେ ଅସଂଖ୍ୟ ସର୍ବଧ୍ୱଂସୀ ବୋମା ଅଜାଡ଼ି ହୋଇ ପଡ଼େ । କେତେ କେତେ ନିର୍ଦ୍ଦୋଷ ନରନାରୀ ଜଦା ପିମ୍ପୁଡ଼ି ପରି ବିନଷ୍ଟ ହୁଅନ୍ତି । ଲକ୍ଷ ଲକ୍ଷ ସୁକୁମାର ଶିଶୁ ଧରାପୃଷ୍ଠରୁ ବିଦାୟ ନିଅନ୍ତି । ଅଥଚ ଭବିଷ୍ୟତରେ ସେହିମାନେ ଦେଶର, ଜାତିର ତଥା ସମଗ୍ର ମାନବସମାଜର ପ୍ରଭୂତ କଲ୍ୟାଣ-ସାଧନ କରିପାରିଥାନ୍ତେ । ଏମାନଙ୍କର ଏହି ଅକାଳମୃତ୍ୟୁ ପାଇଁ ଦାୟୀ କିଏ ? ବିଜ୍ଞାନ ନୁହେଁ କି ? ବିଜ୍ଞାନ ଯଦି ବ୍ୟୋମଯାନ ଆବିଷ୍କାର କରି ନ ଥାନ୍ତା, ବୋମା ବାହାର କରି ନ ଥାନ୍ତା, ତାହାହେଲେ ଏ ସବୁ ଧ୍ୱଂସଲୀଳା କିପରି ଘଟି ଥାଆନ୍ତା ?

ପୂର୍ବକାଳରେ ଦୁର୍ଗ ତିଆରି ହେଉଥିଲା । ତାର ଚାରିପାଖରେ ବଡ଼ ବଡ଼ ମୋଟା କାନ୍ଥ ଦିଆ ହେଉଥିଲା ଓ ଜଳପୂର୍ଣ୍ଣ ପରିଖା ତାହାକୁ ବେଷ୍ଟନ କରୁଥିଲା । ବାରବାଟୀ ଦୁର୍ଗର ଭଗ୍ନାବଶେଷ ତତ୍କାଳୀନ ଦୁର୍ଗନିର୍ମାଣ କୌଶଳ ସୂଚାଇ ଦିଏ । ଆଜିକାଲିର ବୈଜ୍ଞାନିକଯୁଗରେ ସେ ସବୁର ମୂଲ୍ୟ ନାହିଁ । ଜଳପୂର୍ଣ୍ଣ ଗଭୀର ପରିଖା ପ୍ରସ୍ତର ବା ଇଷ୍ଟକ ନିର୍ମିତ ସୁଦୃଢ଼ ପ୍ରାଚୀର ପିଲାଖେଳ ପରି ମନେ ହୁଏ । ତୁମେମାନେ ବିରାଟ ଚୁଏନା ପ୍ରାଚୀର କଥା ଶୁଣିଥିବ, କିନ୍ତୁ ଆଜିକାଲି ସେପରି ପ୍ରାଚୀରର ମୂଲ୍ୟ କିଛି ନାହିଁ ।

ଏହି ଯୁଦ୍ଧକାଳ ମଧ୍ୟରେ ଅନେକ ନୂତନ ନୂତନ ଭୀଷଣ ମାରଣାସ୍ତ୍ର ଉଦ୍ଭାବିତ ହୋଇଅଛି । ରକେଟ୍ ବୋମା, ଏକ ନମ୍ବର, ଦୁଇ ନମ୍ବର 'ଭି' ବୋମା ପ୍ରଭୃତି ଧ୍ୱଂସ ସାଧନର ଜନ୍ୟ ବୈଜ୍ଞାନିକ-

ମାନଙ୍କର ଗବେଷଣା ଦ୍ବାରରେ । ସର୍ବଶେଷରେ ପରମାଣୁ ବୋମା । ଏହା ବିଜ୍ଞାନ ଆବିଷ୍କୃତ ମାରଣାସ୍ତ୍ରମାନଙ୍କ ମଧ୍ୟରେ ସର୍ବାପେକ୍ଷା ଭୟଙ୍କର ଏବଂ ଧ୍ବଂସକାରୀ । ଏପରି ମାରଣାସ୍ତ୍ର ଆମ୍ଭମାନଙ୍କର କଳ୍ପନାର ବାହାରେ । ପାଞ୍ଚ ନମ୍ବରିଆ ଫୁଟବଲ ପରି ଗୋଟିଏ ବୋମା ଲକ୍ଷ ଲକ୍ଷ ଲୋକଙ୍କୁ ଧୂଳି କରି ଦେଇ ପାରିଅଛି । ଏହା ଯେଉଁଠାରେ ପଡ଼ିବ ସେଠାରେ ଥିବା ସମସ୍ତ ବସ୍ତୁ, ଜୀବଜନ୍ତୁ, ନରନାରୀ, ବାଳକ-ବାଳିକା, ପଲକ ମଧ୍ୟରେ ଧୂଳିକଣା ସଙ୍ଗରେ ମିଶିଯିବେ । ଭାବ ଦେଖ ତ, କଟକ ଉପରେ ଯଦି ଗୋଟାଏ ପରମାଣୁ ବୋମା ପଡ଼େ ତାହାହେଲେ ସହରର ଅବସ୍ଥା କଅଣ ହେବ ? ସମସ୍ତ ସହର ଧୂଳି ସଙ୍ଗରେ ମିଶି ଯିବ । ଏହାର ଧ୍ବଂସକାରୀ ପ୍ରଭାବ ସମସ୍ତ ଜଗତକୁ ସ୍ତବ୍ଧ କରି ଦେଇଅଛି । ତେବେ ଏପରି ମାରଣାସ୍ତ୍ରର ଉଦ୍‌ଭାବନ ସକାଶେ ଦାୟୀ କିଏ ? ବିଜ୍ଞାନ ନୁହେଁ କି ? ତେବେ କଣ ବିଜ୍ଞାନଶାସ୍ତ୍ର ଦୂଷଣୀୟ ? ଏ 'ସବୁରୁ ରକ୍ଷା ପାଇବା ପାଇଁ କଣ ବିଜ୍ଞାନକୁ ଏକାବେଳକେ ବର୍ଜନ କରିବାକୁ ହେବ ?

ଚିନ୍ତା କଲେ ମନେହୁଏ ଯେ, ପ୍ରକୃତରେ ବିଜ୍ଞାନର କିଛି ଦୋଷ ନାହିଁ । ବିଜ୍ଞାନକୁ ପରିତ୍ୟାଗ କଲେ ମାନବଜାତିର ଉନ୍ନତି ଅସମ୍ଭବ । ବିଜ୍ଞାନ ହିଁ ସଭ୍ୟତାର ମାପକାଠି—ଜ୍ଞାନର ପରିମାପକ । ଧନ ଉପାର୍ଜନ କଲେ ଚୋର ନେଇଯିବ ବୋଲି କଣ ଧନ ଉପାର୍ଜନ କରିବା ଅନ୍ୟାୟ ? ଯେଉଁ ଗୋଖୁର ସାପର ବିଷ ଏତେ ମାରାତ୍ମକ, ତାହାତ ପୁଣି ଔଷଧରୂପେ ବ୍ୟବହୃତ ହୋଇ ଲୋକକୁ ମୃତ୍ୟୁମୁଖରୁ ଫେରାଇ ଆଣି ପାରୁଅଛି । ତେବେ ପ୍ରଶ୍ନ ହେଉଅଛି ବିଜ୍ଞାନର ବ୍ୟବହାର କିପରି ହେବା ଉଚିତ ?

ବିଜ୍ଞାନ ଅର୍ଥ କଅଣ ? କୌଣସି ବିଷୟରେ ବିଶେଷ ଜ୍ଞାନ ଅର୍ଜନ କରିବାର ନାମ ବିଜ୍ଞାନ । ତେଣୁ ବିଜ୍ଞାନ ଭଲ ବା ମନ୍ଦ ହୋଇ ନ ପାରେ । ଏହାକୁ ଭଲ ଭାବରେ ବ୍ୟବହାର କରି ପାରିଲେ ଏହାର ଫଳ ଭଲ ହେବ ମାତ୍ର ଖରାପ ଭାବରେ ବ୍ୟବହାର କଲେ ଫଳ ବିଷମୟ ହେବ । ଏଣୁ ଏହାର ବ୍ୟବହାର ଉପରେ ଏହାର ଉତ୍କର୍ଷ ବା ଅପକର୍ଷ ନିର୍ଭର କରେ ଅର୍ଥାତ୍ ବ୍ୟବହର୍ତ୍ତା ଉପରେ ଭଲ ମନ୍ଦ ନିର୍ଭର କରେ । ତେବେ ବ୍ୟବହାର କରିବ କିଏ ?

ବ୍ୟବହାର କରିବୁ ଆମେମାନେ—ବ୍ୟବହାର କରିବ ପୃଥିବୀର ଏହି ମାନବସମାଜ । କିନ୍ତୁ ସବୁ ମନୁଷ୍ୟ ତ ସମାଜକୁ ଚଳାଉ ନାହାନ୍ତି । ସମାଜ ଓ ଶାସନ ଚକ୍ରକୁ କେତେକ ମୁଷ୍ଟିମେୟ ଲୋକ ଚଳାନ୍ତି । ବୈଜ୍ଞାନିକମାନେ ସେମାନଙ୍କର ଅସାଧାରଣ ବୁଦ୍ଧି ବଳରେ ଅଦ୍ଭୁତ ଆବିଷ୍କାରମାନ କରି ପାରୁଛନ୍ତି ସତ୍ୟ ମାତ୍ର ଜନସାଧାରଣ ଓ ନେତାମାନଙ୍କର ଦୂରଦୃଷ୍ଟି ଉପରେ ତାହାର ଉପଯୁକ୍ତ ବ୍ୟବହାର ନିର୍ଭର କରୁଛି । ସେମାନେ ଯଦି ନାନା ସ୍ୱାର୍ଥପର କାର୍ଯ୍ୟରେ ଲାଗି ରହନ୍ତି ଏବଂ ବିଜ୍ଞାନର ସେସବୁ ଆବିଷ୍କାରକୁ ନିଜ ନିଜ ସ୍ୱାର୍ଥ ସକାଶେ ବ୍ୟବହାର କରନ୍ତି, ତେବେ ବୈଜ୍ଞାନିକମାନଙ୍କୁ ଦୋଷ ଦେବା ଉଚିତ ହେବ ନାହିଁ । ତେଣୁ ଦେଶସେବକ ଓ ଶାସକମାନେ ସ୍ୱାର୍ଥରେ ବ୍ୟାପୃତ ନ ରହି ଯଦି ବିଶେଷ ଚିନ୍ତାଶୀଳ ଓ ଉଦାର ହେବେ—ଯଦି ସେମାନେ ପୃଥିବୀର ସମୂହ କଲ୍ୟାଣ ଲାଗି ଚେଷ୍ଟା କରିବେ, ତେବେ ବୈଜ୍ଞାନିକ ଉଦ୍ଭାବନଗୁଡିକ କେବଳ କଲ୍ୟାଣସାଧନ ଉଦ୍ଦେଶ୍ୟରେ ନିୟୋଗ କରି ହେବ । ଏହାଦ୍ୱାରା ମାନବସମାଜର ସାଧାରଣ ନୈତିକ ବଳର ବୃଦ୍ଧି ହେବ ଏବଂ ହିଂସା ପରିବର୍ତ୍ତରେ ପରସ୍ପର ପ୍ରତି ସ୍ନେହ ଓ

କଳହ ପରିବର୍ତ୍ତେ ମୈତ୍ରୀ ଭାବ ପ୍ରତିଷ୍ଠିତ ହେବ। ତାହାହେଲେ ମନୁଷ୍ୟକୁ ଧ୍ୱଂସ କରିବା ସକାଶେ ମନୁଷ୍ୟ ଆଉ ମାରଣାସ୍ତ୍ର ଆବିଷ୍କାର କରିବ ନାହିଁ। ଯେଉଁ ପରମାଣୁ ବୋମା ଆଜି ମନୁଷ୍ୟ ମନରେ ଭୀତି ସଞ୍ଚାର କରୁଛି ଓ ଜୀବଜଗତର ଅସ୍ତିତ୍ୱକୁ ଲୋପ କରିଦେବାକୁ ଉଦ୍ୟତ, ତାହା ସମଗ୍ର ମାନବସନ୍ତାନଙ୍କୁ ସୁଖ ଓ ସମୃଦ୍ଧିର ଚରମ ସୋପାନରେ ଯେ ପହଞ୍ଚାଇ ଦେଇ ପାରିବ, ଏଥିରେ ଅଣୁମାତ୍ର ସନ୍ଦେହ ନାହିଁ। କିନ୍ତୁ ଯେତେଦିନ ପର୍ଯ୍ୟନ୍ତ ଆମ୍ଭମାନଙ୍କର ଏ ସୁବୁଦ୍ଧି ନ ହୋଇଛି ସେତେଦିନ ପର୍ଯ୍ୟନ୍ତ ମାନବସମାଜର ଉନ୍ନତି ଅସମ୍ଭବ।

ଅଧ୍ୟାପକ ଶ୍ରୀ ରାଧାନାଥ ରଥ ଏମ୍. ଏ.

## ପ୍ରଶ୍ନ

୧। ବିଜ୍ଞାନ କଅଣ ? ତାହାର ବ୍ୟବହାର କିପରି ହେବା ଉଚିତ ?

୨। ବିଜ୍ଞାନ ଆମ୍ଭମାନଙ୍କର କି ଉପକାର ବା ଅପକାର କରିଅଛି ?

୩। ବିଜ୍ଞାନ ଆବିଷ୍କୃତ କେତେକ ଦ୍ରବ୍ୟର ନାମ ଲେଖ ଏବଂ ସେଗୁଡ଼ିକ ଆମ୍ଭର କି ଉପକାର ସାଧିତ ହୋଇଅଛି ଲେଖ।

୪। 'ବିଜ୍ଞାନ ସଦ୍‌ବ୍ୟବହାର ମାନବ ପାଇଁ—ଜୀବନର ଶ୍ରେୟ ନୁହେଁ'—ଏହି ଉକ୍ତିର ଭାବ ସମ୍ପ୍ରସାରଣ କର।

୫। ଶତ୍ରୁ ବର୍ତ୍ତମାନର ପ୍ରଚଳିତ ଥିବା ଯୁଦ୍ଧପ୍ରଣାଳୀ ସହିତ ପ୍ରାଚୀନ ଯୁଦ୍ଧପ୍ରଣାଳୀ ତୁଳନା କର।

୬। ଅର୍ଥଗତ ପାର୍ଥକ୍ୟ ଦେଖାଅ :—
ଅଣୀ, ଅଣି; ଶତ, ସତ; ଅଦ୍ଭୁତ, ଅଭୂତ

୩ । ନିମ୍ନଲିଖିତ ପଦ୍ୟାଂଶର ଅର୍ଥ ସରଳ ଭାଷାରେ ଲେଖ—

(କ) ମାନବ ଜୀବନ ନୁହଇ କେବଳ
ବର୍ଷ ମାସ ଦିନ ଦଣ୍ଡ,
କର୍ମେ ଜୀଏଁ ନର, କର୍ମ ଏକା ତାର
ଜୀବନର ମାନଦଣ୍ଡ ।

(ଖ) ଲଭୁ ସେ କ୍ଷଣକେ ତଥାପି ଏ ଲୋକେ
ରହେ ତା ଆଦର ଯଶ
କି ଲୋଡ଼ା ତିଷ୍ଠିଁରେ ରହେ ଯେ ମହୀରେ
କୁହୁଳି ସହସ୍ର ବର୍ଷ ।

୪ । ତୃତୀୟ ପ୍ରଶ୍ନରେ ଥିବା ରେଖାଙ୍କିତ ପଦମାନଙ୍କର ଅନ୍ୱୟ ଲେଖ ।

୫ । ବ୍ୟୁତ୍ପତ୍ତି ଲେଖ—ହୁତାଶନ, ଇତିହାସ, ବିସର୍ଜନ, ପରିଣାମ ।

---

## ଉଲ୍କାପାତ

ସମୟେ ସମୟେ ରାତିରେ ଆକାଶ ପ୍ରତି ଦୃଷ୍ଟି ନିକ୍ଷେପ କଲେ ଉଜ୍ଜ୍ୱଳ ତାରକା ପରି କେତେକ ପଦାର୍ଥ ପୃଥିବୀ ଅଭିମୁଖରେ ପତିତ ହେବା ପରି ଜଣାପଡ଼େ; ଆକାଶରେ ଗୋଟିଏ ଗୋଟିଏ ଉଜ୍ଜ୍ୱଳରେଖା ଅଙ୍କିତ ହୋଇଯାଏ । ଏହାକୁ ଦେଖି ଆମ୍ଭେମାନେ ନକ୍ଷତ୍ର ଖସିଲା ବୋଲି କହୁଁ । କିନ୍ତୁ ଏଗୁଡ଼ିକ ନକ୍ଷତ୍ର ନୁହନ୍ତି । ଦୂରବର୍ତ୍ତୀ ନକ୍ଷତ୍ରଗୁଡ଼ିକ ଯେପରି ଆମ୍ଭମାନଙ୍କୁ ଉଜ୍ଜ୍ୱଳ ଦେଖାଯାନ୍ତି, ଏହି ପଦାର୍ଥଗୁଡ଼ିକ ପତିତ ହେବାବେଳେ ସେହିପରି ଉଜ୍ଜ୍ୱଳ ଦେଖାଯାଉଥିବାରୁ ସାଧାରଣ ଲୋକେ ସେଗୁଡ଼ିକୁ ନକ୍ଷତ୍ର ଖସିଲା ବୋଲି କହୁଥାନ୍ତି । ପ୍ରକୃତରେ ଏହି ପଦାର୍ଥଗୁଡ଼ିକର ନାମ ଉଲ୍କା । ଉଲ୍କାପାତ ସାଧାରଣତଃ ଦୁଇ

ପ୍ରକାର ଦେଖାଯାଏ । ପ୍ରଥମତଃ ଆକାଶର ଗୋଟିଏ ବିନ୍ଦୁରୁ ବହୁସଂଖ୍ୟକ ଆଲୋକପିଣ୍ଡ ଏକ ସମୟରେ ଚତୁର୍ଦ୍ଦିଗରେ ବିଚ୍ଛୁରିତହେଲା ପରି ଜଣାଯାଏ । ଦ୍ୱିତୀୟତଃ କୌଣସି ସମୟରେ ଗୋଟିଏ ଗୋଟିଏ ଉଜ୍ଜ୍ୱଳ ପିଣ୍ଡ ଖସିବାର ଦେଖାଯାଏ । ଏହା ଛଡ଼ା ବେଳେବେଳେ ଏକପ୍ରକାର ପଥରଖଣ୍ଡ ମଧ୍ୟ ପଡ଼ିବାର ଜଣାଅଛି । ଏହି ପଥରଗୁଡ଼ିକୁ ଉଲ୍‌କାଜାତୀୟ ବୋଲି ଯାଇପାରେ ।

ଆକାଶ ପ୍ରତି ଦୃଷ୍ଟି ଦେଲେ ଜଣାଯିବ ଯେ, ଆକାଶର ଯେଉଁ ସ୍ଥାନରେ ଆଦୌ ଉଜ୍ଜ୍ୱଳ ନକ୍ଷତ୍ର ଦେଖାଯାନ୍ତି ନାହିଁ, ସେହି ସ୍ଥାନରୁ ଉଜ୍ଜ୍ୱଳପିଣ୍ଡ ବା ଉଲ୍‌କା ଖସିଆସେ । ମାତ୍ର ତାହାର ଦେହକୁ ଉଜ୍ଜ୍ୱଳତା ଆସେ କେଉଁଆଡ଼ୁ ? ବୈଜ୍ଞାନିକ ପରୀକ୍ଷଣରେ ନିରୂପିତ ହୋଇଅଛି ଯେ ଉଲ୍‌କାପିଣ୍ଡଗୁଡ଼ିକର ନିଜର ଆଲୋକ ନାହିଁ । ସେମାନେ ବୃତ୍ତାଭାସ ପଥରେ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ପ୍ରଦକ୍ଷିଣ କରନ୍ତି । ପୃଥିବୀର ଚତୁଃପାଖରେ ବାୟୁମଣ୍ଡଳ ରହିଅଛି । ଯେତେବେଳେ ଉଲ୍‌କାପିଣ୍ଡଗୁଡ଼ିକ ଏହି ବାୟୁମଣ୍ଡଳ ମଧ୍ୟ ଦେଇ ଦ୍ରୁତବେଗରେ ଗତି କରନ୍ତି, ସେତେବେଳେ ବାୟୁ ସହିତ ସେମାନଙ୍କର ସଂଘର୍ଷ ହେତୁ ଏତେ ଉତ୍ତାପ ଜାତ ହୁଏ ଯେ, ଉଲକାପିଣ୍ଡଗୁଡ଼ିକ ଜଳି ଉଠନ୍ତି; ତେଣୁ ଆକାଶରେ ଗୋଟିଏ ଆଲୋକରେଖାପାତ ହେଲା ଭଳି ଦେଖାଯାଏ । ଏହାହିଁ ଉଲ୍‌କାର ଉଜ୍ଜ୍ୱଳତାର କାରଣ ।

ଏହିଠାରେ ପ୍ରଶ୍ନ ହୋଇପାରେ—ଉଲ୍‌କାଗୁଡ଼ିକ ବାୟୁମଣ୍ଡଳକୁ ଆସନ୍ତି କିପରି ? ଏହି ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ଉଲ୍‌କାପିଣ୍ଡର ଗତି ବିଷୟ ଜାଣିବା ଆବଶ୍ୟକ । ପୂର୍ବରୁ କୁହା ହୋଇଅଛି ଯେ, ଉଲ୍‌କାପୁଞ୍ଜ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଦୀର୍ଘବୃତ୍ତାଭାସ ପଥରେ ସର୍ବଦା ଗତି କରନ୍ତି । ବାୟୁମଣ୍ଡଳ କେବଳ ପୃଥିବୀ ଚତୁଃପାଖରେ ଦେଖ

ରହିଅଛି । ପୃଥିବୀ ମଧ୍ୟ ବୃତ୍ତାଭାସ ପଥରେ ସୂର୍ଯ୍ୟର ଚତୁଃପାର୍ଶ୍ୱରେ ଭ୍ରମଣ କରୁଅଛି । ଗୋଟିଏ ଲୁହା ତାରର ବୃତ୍ତକୁ ଆଉ ଗୋଟିଏ ଲୁହା ତାରର ବୃତ୍ତ ଉପରେ ସ୍ପର୍ଶ କରାଇଲେ ପରସ୍ପର ପରସ୍ପରକୁ ଯେପରି ଛେଦ କରିବେ, ସେହିପରି ଉଲ୍‌କାପୁଞ୍ଜର କକ୍ଷ ଓ ପୃଥିବୀର କକ୍ଷ ପରସ୍ପରକୁ ଛେଦ କରିଅଛନ୍ତି । ଯେଉଁ ସମୟରେ ପୃଥିବୀ ଏହି କକ୍ଷଗୁଡ଼ିକର ଛେଦ ଉପର ଦେଇ ଗତି କରେ, ସେହି ସମୟରେ ଉଲ୍‌କାପୁଞ୍ଜ ମଧ୍ୟରୁ କେତେକ ପୃଥିବୀର ବାୟୁମଣ୍ଡଳ ମଧ୍ୟ ଦେଇ ଗତି କରୁ କରୁ ବାୟୁମଣ୍ଡଳର ସଂଘର୍ଷରେ ଆସି ଜଳି ଉଠନ୍ତି । ତେଣୁ ଉଲ୍‌କାପାତ ଦୃଷ୍ଟିଗୋଚର ହୁଏ । ନଭେମ୍ବର ଓ ଅଗଷ୍ଟ ମାସରେ ପୃଥିବୀ ଉପରୋକ୍ତ କକ୍ଷଛେଦ ଉପର ଦେଇ ଗତି କରୁଥିବାରୁ ଏହି ଦୁଇ ମାସରେ ବିଶେଷତଃ ନଭେମ୍ବର ମାସରେ ବହୁ ଉଲ୍‌କାପାତ ଦେଖାଯାଏ । ଉଲ୍‌କାପୁଞ୍ଜମଧ୍ୟସ୍ଥ ପ୍ରତ୍ୟେକ ଉଲ୍‌କା ନିଜର ସ୍ୱତନ୍ତ୍ର କକ୍ଷରେ ଭ୍ରମଣ କଲେହେଁ ବିଭିନ୍ନ ପିଣ୍ଡର କକ୍ଷଗୁଡ଼ିକ ପରସ୍ପରର ନିକଟବର୍ତ୍ତୀ । ପୃଥିବୀର ଗତିକାଳରେ ଯଦି ବହୁସଂଖ୍ୟକ ଉଲ୍‌କା-ପିଣ୍ଡ ଏକତ୍ର ଗତି କରୁଥାନ୍ତି, ତାହାହେଲେ ଅସଂଖ୍ୟ ଉଲ୍‌କାପାତ ହୋଇଥାଏ । ମାତ୍ର ଯଦି ଗୋଟି ଗୋଟି ହୋଇ ଗତି କରୁଥାନ୍ତି, ତାହାହେଲେ କେତେଗୁଡ଼ିଏ ଉଲ୍‌କାପାତ ଦୃଷ୍ଟ ହୋଇଥାଏ । ବହୁ-ସଂଖ୍ୟକ ଉଲ୍‌କା ଏକତ୍ର ପଡ଼ିବା ବେଳେ ଗୋଟିଏ ବିନ୍ଦୁରୁ ସ୍ୱରି ଆଡ଼କୁ ବୃଷ୍ଟି ହୋଇ ପଡ଼ିଲପରି ଜଣାଯାଏ । ଆମ୍ଭେମାନେ ଜାଣୁ ଯେ, ସମାନ୍ତରାଳ ରେଖା ବହୁ ଦୂରରେ ମିଳିତ ହେଲା ପରି ଦେଖା ଯାଆନ୍ତି । ରେଳପଥର ଲୁହାଧାରଣା ପାଖରେ ଠିଆ ହୋଇ ଗୁହିଁଲେ ସେଗୁଡ଼ିକ ସତେ ଯେପରି ବହୁ ଦୂରରେ ମିଳିତ ହେବାପରି ଦେଖା ଯାଏ । ଉଲ୍‌କାପୁଞ୍ଜର ବିଭିନ୍ନ ଗତିପଥ ପରସ୍ପର ପ୍ରତି ସମାନ୍ତରାଳ, ତେଣୁ ସେଗୁଡ଼ିକ ଆକାଶରେ ଏକତ୍ର ମିଳିତ ହେବାଭଳି ଆମ

ପ୍ରକାର ଦେଖାଯାଏ । ପ୍ରଥମତଃ ଆକାଶର ଗୋଟିଏ ବିନ୍ଦୁରୁ ବହୁ-ସଂଖ୍ୟକ ଆଲୋକପିଣ୍ଡ ଏକ ସମୟରେ ଚତୁର୍ଦ୍ଦିଗରେ ବିଚ୍ଛୁରିତହେଲା ପରି ଜଣାଯାଏ । ଦ୍ୱିତୀୟତଃ କୌଣସି ସମୟରେ ଗୋଟିଏ ଗୋଟିଏ ଉଜ୍ଜ୍ୱଳ ପିଣ୍ଡ ଖସିବାର ଦେଖାଯାଏ । ଏହା ଛଡ଼ା ବେଳେବେଳେ ଏକପ୍ରକାର ପଥରଖଣ୍ଡ ମଧ୍ୟ ପଡ଼ିବାର ଜଣାଅଛି । ଏହି ପଥର-ଗୁଡ଼ିକୁ ଉଲ୍କାଜାତୀୟ ବୋଲି ଯାଇପାରେ ।

ଆକାଶ ପ୍ରତି ଦୃଷ୍ଟି ଦେଲେ ଜଣାଯିବ ଯେ, ଆକାଶର ଯେଉଁ ସ୍ଥାନରେ ଆଦୌ ଉଜ୍ଜ୍ୱଳ ନକ୍ଷତ୍ର ଦେଖାଯାନ୍ତି ନାହିଁ, ସେହି ସ୍ଥାନରୁ ଉଜ୍ଜ୍ୱଳପିଣ୍ଡ ବା ଉଲ୍କା ଖସିଆସେ । ମାତ୍ର ତାହାର ଦେହକୁ ଉଜ୍ଜ୍ୱଳତା ଆସେ କେଉଁଆଡ଼ୁ ? ବୈଜ୍ଞାନିକ ପରୀକ୍ଷଣରେ ନିରୂପିତ ହୋଇଅଛି ଯେ ଉଲ୍କାପିଣ୍ଡଗୁଡ଼ିକର ନିଜର ଆଲୋକ ନାହିଁ । ସେମାନେ ବୃହ-ତ୍ତ୍ୱାସ ପଥରେ ସୂର୍ଯ୍ୟଙ୍କ ଚତୁର୍ଦ୍ଦିଗରେ ପ୍ରଦକ୍ଷିଣ କରନ୍ତି । ପୃଥିବୀର ଚାରି ପାଖରେ ବାୟୁମଣ୍ଡଳ ରହିଅଛି । ଯେତେବେଳେ ଉଲ୍କାପିଣ୍ଡଗୁଡ଼ିକ ଏହି ବାୟୁମଣ୍ଡଳ ମଧ୍ୟ ଦେଇ ଦ୍ରୁତବେଗରେ ଗତି କରନ୍ତି, ସେତେବେଳେ ବାୟୁ ସହିତ ସେମାନଙ୍କର ସଂଘର୍ଷ ହେତୁ ଏତେ ଉତ୍ତାପ ଜାତ ହୁଏ ଯେ, ଉଲକାପିଣ୍ଡଗୁଡ଼ିକ ଜଳି ଉଠନ୍ତି; ତେଣୁ ଆକାଶରେ ଗୋଟିଏ ଆଲୋକରେଖାପାତ ହେଲା ଭଳି ଦେଖାଯାଏ । ଏହାହିଁ ଉଲ୍କାର ଉଜ୍ଜ୍ୱଳତାର କାରଣ ।

ଏହିଠାରେପ୍ରଶ୍ନ ହୋଇପାରେ—ଉଲ୍କାଗୁଡ଼ିକ ବାୟୁମଣ୍ଡଳକୁ ଆସନ୍ତି କିପରି ? ଏହି ପ୍ରଶ୍ନର ଉତ୍ତର ପାଇବାକୁ ହେଲେ ଉଲ୍କା-ପିଣ୍ଡର ଗତି ବିଷୟ ଜାଣିବା ଆବଶ୍ୟକ । ପୂର୍ବରୁ କୁହା ହୋଇଅଛି ଯେ, ଉଲ୍କାପୁଞ୍ଜ ସୂର୍ଯ୍ୟର ଚତୁର୍ଦ୍ଦିଗରେ ଦୀର୍ଘବୃତ୍ତାଭାସ ପଥରେ ସର୍ବଦା ଗତି କରନ୍ତି । ବାୟୁମଣ୍ଡଳ କେବଳ ପୃଥିବୀ ଚାରିପାଖରେ ସେହି

ରହିଅଛି । ପୃଥିବୀ ମଧ୍ୟ ବୃତ୍ତାଭାସ ପଥରେ ସୂର୍ଯ୍ୟର ଚତୁଃପାର୍ଶ୍ୱରେ ଭ୍ରମଣ କରୁଅଛି । ଗୋଟିଏ ଲୁହା ତାରର ବୃତ୍ତକୁ ଆଉ ଗୋଟିଏ ଲୁହା ତାରର ବୃତ୍ତ ଉପରେ ସ୍ପର୍ଶ କରାଇଲେ ପରସ୍ପର ପରସ୍ପରକୁ ଯେପରି ଛେଦ କରିବେ, ସେହିପରି ଉଲ୍‌କାପୁଞ୍ଜର କକ୍ଷ ଓ ପୃଥିବୀର କକ୍ଷ ପରସ୍ପରକୁ ଛେଦ କରିଅଛନ୍ତି । ଯେଉଁ ସମୟରେ ପୃଥିବୀ ଏହି କକ୍ଷଗୁଡ଼ିକର ଛେଦ ଉପର ଦେଇ ଗତି କରେ, ସେହି ସମୟରେ ଉଲ୍‌କାପୁଞ୍ଜ ମଧ୍ୟରୁ କେତେକ ପୃଥିବୀର ବାୟୁମଣ୍ଡଳ ମଧ୍ୟ ଦେଇ ଗତି କରୁ କରୁ ବାୟୁମଣ୍ଡଳର ସଂଘର୍ଷରେ ଆସି ଜଳି ଉଠନ୍ତି । ତେଣୁ ଉଲ୍‌କାପାତ ଦୃଷ୍ଟିଗୋଚର ହୁଏ । ନଭେମ୍ବର ଓ ଅଗଷ୍ଟ ମାସରେ ପୃଥିବୀ ଉପରୋକ୍ତ କକ୍ଷଚ୍ଛେଦ ଉପର ଦେଇ ଗତି କରୁଥିବାରୁ ଏହି ଦୁଇ ମାସରେ ବିଶେଷତଃ ନଭେମ୍ବର ମାସରେ ବହୁ ଉଲ୍‌କାପାତ ଦେଖାଯାଏ । ଉଲ୍‌କାପୁଞ୍ଜମଧ୍ୟସ୍ଥ ପ୍ରତ୍ୟେକ ଉଲ୍‌କା ନିଜର ସ୍ୱତନ୍ତ୍ର କକ୍ଷରେ ଭ୍ରମଣ କଲେହେଁ ବିଭିନ୍ନ ପିଣ୍ଡର କକ୍ଷଗୁଡ଼ିକ ପରସ୍ପରର ନିକଟବର୍ତ୍ତୀ । ପୃଥିବୀର ଗତିକାଳରେ ଯଦି ବହୁସଂଖ୍ୟକ ଉଲ୍‌କା-ପିଣ୍ଡ ଏକତ୍ର ଗତି କରୁଥାନ୍ତି, ତାହାହେଲେ ଅସରାଏ ଉଲ୍‌କାପାତ ହୋଇଥାଏ । ମାତ୍ର ଯଦି ଗୋଟି ଗୋଟି ହୋଇ ଗତି କରୁଥାନ୍ତି, ତାହାହେଲେ କେତେଗୁଡ଼ିଏ ଉଲ୍‌କାପାତ ଦୃଷ୍ଟ ହୋଇଥାଏ । ବହୁ-ସଂଖ୍ୟକ ଉଲ୍‌କା ଏକତ୍ର ପଡ଼ିବା ବେଳେ ଗୋଟିଏ ବିନ୍ଦୁରୁ ଚାରି-ଆଡ଼କୁ ବୁଣି ହୋଇ ପଡ଼ିଲପରି ଜଣାଯାଏ । ଆମ୍ଭେମାନେ ଜାଣୁ ଯେ, ସମାନ୍ତରାଳ ରେଖା ବହୁ ଦୂରରେ ମିଳିତ ହେଲା ପରି ଦେଖାଯାଆନ୍ତି । ରେଳପଥର ଲୁହାଧାରଣା ପାଖରେ ଠିଆ ହୋଇ ଚାହିଁଲେ ସେଗୁଡ଼ିକ ସତେ ଯେପରି ବହୁ ଦୂରରେ ମିଳିତ ହେବାପରି ଦେଖାଯାଏ । ଉଲ୍‌କାପୁଞ୍ଜର ବିଭିନ୍ନ ଗତିପଥ ପରସ୍ପର ପ୍ରତି ସମାନ୍ତରାଳ, ତେଣୁ ସେଗୁଡ଼ିକ ଆକାଶରେ ଏକତ୍ର ମିଳିତ ହେବାଭଳି ଆମ

ଆଖିକୁ ଦେଖାଯିବା ସ୍ୱାଭାବିକ । ଉଲ୍କାପାତ ପ୍ରକୃତରେ ସମାନ୍ତରାଳ ଭାବରେ ବିଭିନ୍ନ ସ୍ଥାନରୁ ହେଉଥିଲେ ସୁଦ୍ଧା ପୂର୍ବୋକ୍ତ କାରଣ ଯୋଗୁଁ ଗୋଟିଏ ବିନ୍ଦୁରୁ ପତିତ ହେବାପରି ଜଣାଯାଏ ।

ଉଲ୍କାପିଣ୍ଡଗୁଡ଼ିକ ଅତି କ୍ଷୁଦ୍ର ବୋଲି ଅନୁମିତ ହୁଏ । ବୋଧହୁଏ ସେହି ହେତୁରୁ ସେମାନଙ୍କ ମଧ୍ୟରୁ କୌଣସିଟି ଏ ପର୍ଯ୍ୟନ୍ତ ପୃଥିବୀପୃଷ୍ଠକୁ ସ୍ପର୍ଶ କରି ପାରିନାହିଁ । ଏହି ପିଣ୍ଡଗୁଡ଼ିକ ଧୂମକେତୁମାନଙ୍କ ସହିତ ସମ୍ପୃକ୍ତ ବୋଲି ନାନା ବୈଜ୍ଞାନିକ ଗବେଷଣାରୁ ଜଣା ପଡ଼ିଅଛି । ଉଲ୍କାପୁଞ୍ଜର ଗତିପଥ ନିରୂପଣ କରିବାକୁ ଯାଇ ବିଭିନ୍ନ ବୈଜ୍ଞାନିକ ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଯେ, ତାହା କୌଣସି ନା କୌଣସି ନିର୍ଦ୍ଦିଷ୍ଟ ଧୂମକେତୁର ଗତି ସହିତ ମିଳିତ । ଧୂମକେତୁ ସହିତ ଉଲ୍କାପୁଞ୍ଜର ସମ୍ପର୍କ ନିଶ୍ଚିତ ଭାବରେ ନିରୂପିତ ହେଲେ ସୁଦ୍ଧା କିପରି ଭାବରେ ସେମାନେ ପରସ୍ପର ସହିତ ସମ୍ପୃକ୍ତ, ତାହା ନିର୍ଣ୍ଣୀତ ହୋଇନାହିଁ । ଧୂମକେତୁ ଅତି ହାଲୁକା ପଦାର୍ଥରେ ଗଠିତ । ଉଲ୍କାପିଣ୍ଡ ସମ୍ଭବତଃ ଧୂମକେତୁର ବିଚ୍ଛିନ୍ନ ଅଂଶ, ଦେଖାଯାଏ । ତେଣୁ ଉଲ୍କାଗୁଡ଼ିକ ଧୂମକେତୁଠାରୁ ଜାତ ହେବା କାରଣ ଧୂମକେତୁ ଦୁଇ ବା ତତୋଧିକ ଅଂଶରେ ବିଭକ୍ତ ହେବା ବିଷୟ ଅନୁମାନ କରାଯାଇ ପାରେ । ଉଲ୍କାପିଣ୍ଡର ଗତିପଥ କ୍ରମଶଃ ପରିବର୍ତ୍ତିତ ହେଉଅଛି । ଗ୍ରହମାନଙ୍କର ଆକର୍ଷଣ ପ୍ରଭାବରୁ ଉଲ୍କାର ଗତିପଥ ପୂର୍ବସ୍ଥାନରୁ ଅନ୍ୟତ୍ର ଅପସାରିତ ହୋଇଯିବାର ପ୍ରମାଣ ମଧ୍ୟ ମିଳିଅଛି ।

୧୮୬୬ ସାଲ ନଭେମ୍ବର ମାସ ୧୩ ତାରିଖ ରାତିରେ ଅସଂଖ୍ୟ ଉଲ୍କାପାତ ହୋଇଥିଲା । ଜଣେ ଖ୍ୟାତନାମା ବୈଜ୍ଞାନିକ ତାହା ସ୍ୱଚକ୍ଷୁରେ ଦେଖି ନିମ୍ନୋକ୍ତମତେ ଲେଖିଅଛନ୍ତି—

ରାତିରେ ଚନ୍ଦ୍ର ନ ଥିଲା । ମୁଁ ସେଦିନ ଦୂରବୀକ୍ଷଣଯନ୍ତ୍ରରେ ଏକ ନୀହାରିକା ପର୍ଯ୍ୟବେକ୍ଷଣରେ ବ୍ୟସ୍ତ ଥିଲି । ପ୍ରାୟ ରାତି ଦଶଟା ସମୟରେ ମୋର ଜଣେ ସହକର୍ମୀଙ୍କ ପାଟି ଶୁଣି ମୁଁ ଆକାଶପ୍ରତି ଦୃଷ୍ଟି ନିକ୍ଷେପ କରି ଯାହା ଦେଖିଲି, ତାହା ଜୀବନରେ କଦାପି ବିସ୍ମୃତ ହୋଇ ପାରିବ ନାହିଁ । ପୂର୍ବ ଦିଗରୁ ଅଗଣିତ ଉଲ୍କା ଆମ୍ଭମାନଙ୍କର ଚତୁର୍ଦ୍ଦିଗରେ ଯେପରି କି ବୃଷ୍ଟି ହୋଇ ପଡ଼ିଲେ । ଘଣ୍ଟାଏ ପର୍ଯ୍ୟନ୍ତ ଆକାଶ ଏହି ରମଣୀୟ ଶୋଭା ଧାରଣ କରି ଦର୍ଶକର ମନ ପ୍ରାଣ ହରଣ କରିଥିଲା । ସେ ଦୃଶ୍ୟ ବର୍ଣନାତୀତ, ତାହା କେବଳ ଦର୍ଶକର ଉପଭୋଗର ଯୋଗ୍ୟ ସାମଗ୍ରୀ । ସେହି ଦିନରେ କେତେ ସହସ୍ର ଉଲ୍କାପାତ ହୋଇଥିଲା, ତାହା ନିରୂପଣ କରିବା କଠିନ । ସେମାନଙ୍କ ମଧ୍ୟରୁ ଯେ କୌଣସିଟି ଯଦି ଅନ୍ୟ ଦିନ ଦେଖା ଯାଇଥାନ୍ତା, ତାହାହେଲେ ନିଜର ଉଜ୍ଜ୍ୱଳତାରେ ନିଶ୍ଚୟ ସମସ୍ତଙ୍କୁ ମୁଗ୍ଧ କରିଥାନ୍ତା । ଏହିପରି ନାନା ସମୟରେ ଉଲ୍କାବୃଷ୍ଟି ହୋଇଥିବାର ଜଣାଅଛି ।

ବର୍ତ୍ତମାନ ଉଲ୍କାପ୍ରସ୍ତର ବିଷୟ ଆଲୋଚନା କରାଯାଉ । ବିଭିନ୍ନ ସମୟରେ ଆକାଶରୁ ଏକ ସେର ଓଜନରୁ ଆରମ୍ଭ କରି କେତେ ମହଣ ଓଜନର ପ୍ରସ୍ତର ଭୂପୃଷ୍ଠରେ ପତିତ ହେବା କଥା ବହୁ ପ୍ରାଚୀନକାଳରୁ ଜଣା ଯାଇଅଛି । ଏହିପରି କେତେଗୁଡ଼ାଏ ଉଲ୍କାପ୍ରସ୍ତର ପୃଥିବୀର ବିଭିନ୍ନ ଯାଦୁଘରରେ ସଂରକ୍ଷିତ ହୋଇଅଛି । ଏଗୁଡ଼ିକ ପୂର୍ବବର୍ଣ୍ଣିତ ଉଲ୍କାଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଏମାନେ ଭୂପୃଷ୍ଠରେ ପତିତ ହେଲା ବେଳେ ଆଲୋକ ଦେଖାଯାଏ ନାହିଁ । ଏହି ଉଲ୍କାପ୍ରସ୍ତରପାତ ବିଷୟରେ ବିଭିନ୍ନ ବୈଜ୍ଞାନିକ ନାନା ମତ ପ୍ରକାଶ କରିଅଛନ୍ତି ।

ଆଖିକୁ ଦେଖାଯିବା ସ୍ୱାଭାବିକ । ଉଲ୍କାପାତ ପ୍ରକୃତରେ ସମାନ୍ତରାଳ ଭାବରେ ବିଭିନ୍ନ ସ୍ଥାନରୁ ହେଉଥିଲେ ସୁଦ୍ଧା ପୂର୍ବୋକ୍ତ କାରଣ ଯୋଗୁଁ ଗୋଟିଏ ବିନ୍ଦୁରୁ ପତିତ ହେବାପରି ଜଣାଯାଏ ।

ଉଲ୍କାପିଣ୍ଡଗୁଡ଼ିକ ଅତି କ୍ଷୁଦ୍ର ବୋଲି ଅନୁମିତ ହୁଏ । ବୋଧ-ହୁଏ ସେଥିପାଇଁ ସେମାନଙ୍କ ମଧ୍ୟରୁ କୌଣସିଟି ଏ ପର୍ଯ୍ୟନ୍ତ ପୃଥିବୀପୃଷ୍ଠକୁ ସ୍ପର୍ଶ କରି ପାରିନାହିଁ । ଏହି ପିଣ୍ଡଗୁଡ଼ିକ ଧୂମକେତୁ-ମାନଙ୍କ ସହିତ ସମ୍ପୃକ୍ତ ବୋଲି ନାନା ବୈଜ୍ଞାନିକ ଗବେଷଣାରୁ ଜଣା ପଡ଼ିଅଛି । ଉଲ୍କାପୁଞ୍ଜର ଗତିପଥ ନିରୂପଣ କରିବାକୁ ଯାଇ ବିଭିନ୍ନ ବୈଜ୍ଞାନିକ ଏହି ସିଦ୍ଧାନ୍ତରେ ଉପନୀତ ହୋଇଅଛନ୍ତି ଯେ, ତାହା କୌଣସି ନା କୌଣସି ନିର୍ଦ୍ଦିଷ୍ଟ ଧୂମକେତୁର କକ୍ଷ ସହିତ ମିଳିତ । ଧୂମକେତୁ ସହିତ ଉଲ୍କାପୁଞ୍ଜର ସମ୍ପର୍କ ନିଶ୍ଚିତ ଭାବରେ ନିରୂପିତ ହେଲେ ସୁଦ୍ଧା କିପରି ଭାବରେ ସେମାନେ ପରସ୍ପର ସହିତ ସମ୍ପୃକ୍ତ, ତାହା ନିର୍ଣ୍ଣୀତ ହୋଇନାହିଁ । ଧୂମକେତୁ ଅତି ହାଲୁକା ପଦାର୍ଥରେ ଗଠିତ । ଉଲ୍କାପିଣ୍ଡ ସମ୍ଭବତଃ ଧୂମକେତୁର ବିଚ୍ଛିନ୍ନ ଅଂଶ, ଦେଖାଯାଏ । ତେଣୁ ଉଲ୍କାଗୁଡ଼ିକ ଧୂମକେତୁଠାରୁ ଜାତ ହେବା କାରଣ ଧୂମକେତୁ ଦୁଇ ବା ତତୋଧିକ ଅଂଶରେ ବିଭକ୍ତ ହେବା ବିଷୟ ଅନୁମାନ କରାଯାଇ ପାରେ । ଉଲ୍କାପିଣ୍ଡର ଗତିପଥ କ୍ରମଶଃ ପରିବର୍ତ୍ତିତ ହେଉଅଛି । ଗ୍ରହମାନଙ୍କର ଆକର୍ଷଣ ପ୍ରଭାବରୁ ଉଲ୍କାର ଗତିପଥ ପୂର୍ବସ୍ଥାନରୁ ଅନ୍ୟତ୍ର ଅପସାରିତ ହୋଇଯିବାର ପ୍ରମାଣ ମଧ୍ୟ ମିଳିଅଛି ।

୧୮୬୬ ସାଲ ନଭେମ୍ବର ମାସ ୧୩ ତାରିଖ ରାତିରେ ଅସଂଖ୍ୟ ଉଲ୍କାପାତ ହୋଇଥିଲା । ଜଣେ ଖ୍ୟାତନାମା ବୈଜ୍ଞାନିକ ତାହା ସ୍ୱଚକ୍ଷୁରେ ଦେଖି ନିମ୍ନୋକ୍ତମତେ ଲେଖିଅଛନ୍ତି—

ରାତିରେ ଚନ୍ଦ୍ର ନ ଥିଲା । ମୁଁ ସେଦିନ ଦୂରବୀକ୍ଷଣଯନ୍ତ୍ରରେ ଏକ ନୀହାରିକା ପର୍ଯ୍ୟବେକ୍ଷଣରେ ବ୍ୟସ୍ତ ଥିଲି । ପ୍ରାୟ ରାତି ଦଶଟା ସମୟରେ ମୋର ଜଣେ ସହକର୍ମୀଙ୍କ ପାଟି ଶୁଣି ମୁଁ ଆକାଶପ୍ରତି ଦୃଷ୍ଟି ନିକ୍ଷେପ କରି ଯାହା ଦେଖିଲି, ତାହା ଜୀବନରେ କଦାପି ବିସ୍ମୃତ ହୋଇ ପାରିବି ନାହିଁ । ପୂର୍ବ ଦିଗରୁ ଅଗଣିତ ଉଲ୍କା ଆମ୍ଭମାନଙ୍କର ଚତୁର୍ଦ୍ଦିଗରେ ଯେପରି କି ବୃଷ୍ଟି ହୋଇ ପଡ଼ିଲେ । ଘଣ୍ଟାଘଣ୍ଟା ପର୍ଯ୍ୟନ୍ତ ଆକାଶ ଏକ ରମଣୀୟ ଶୋଭା ଧାରଣ କରି ଦର୍ଶକର ମନ ପ୍ରାଣ ହରଣ କରିଥିଲା । ସେ ଦୃଶ୍ୟ ବର୍ଣ୍ଣନାତୀତ, ତାହା କେବଳ ଦର୍ଶକର ଉପଭୋଗର ଯୋଗ୍ୟ ସାମଗ୍ରୀ । ସେହି ରାତିରେ କେତେ ସହସ୍ର ଉଲ୍କାପାତ ହୋଇଛି, ତାହା ନିରୂପଣ କରିବା କଠିନ । ସେମାନଙ୍କ ମଧ୍ୟରୁ ଯେ କୌଣସିଟି ଯଦି ଅନ୍ୟ ଦିନ ଦେଖା ଯାଇଥାନ୍ତା, ତାହାହେଲେ ନିଜର ଉଜ୍ଜ୍ୱଳତାରେ ନିଶ୍ଚୟ ସମସ୍ତଙ୍କୁ ମୁଗ୍ଧ କରିଥାନ୍ତା । ଏହିପରି ନାନା ସମୟରେ ଉଲ୍କାବୃଷ୍ଟି ହୋଇଥିବାର ଜଣାଅଛି ।

ବର୍ତ୍ତମାନ ଉଲ୍କାପ୍ରସ୍ତର ବିଷୟ ଆଲୋଚନା କରାଯାଉ । ବିଭିନ୍ନ ସମୟରେ ଆକାଶରୁ ଏକ ସେର ଓଜନରୁ ଆରମ୍ଭ କରି କେତେ ମହଣ ଓଜନର ପ୍ରସ୍ତର ଭୂପୃଷ୍ଠରେ ପତିତ ହେବା କଥା ବହୁ ପ୍ରାଚୀନକାଳରୁ ଜଣା ଯାଇଅଛି । ଏହିଭଳି କେତେଗୁଡ଼ାଏ ଉଲ୍କାପ୍ରସ୍ତର ପୃଥିବୀର ବିଭିନ୍ନ ଯାଦୁଘରରେ ସଂରକ୍ଷିତ ହୋଇଅଛି । ଏଗୁଡ଼ିକ ପୂର୍ବବର୍ଣ୍ଣିତ ଉଲ୍କାଠାରୁ ସମ୍ପୂର୍ଣ୍ଣ ପୃଥକ୍ । ଏମାନେ ଭୂପୃଷ୍ଠରେ ପତିତ ହେଲାବେଳେ ଆଲୋକ ଦେଖାଯାଏ ନାହିଁ । ଏହି ଉଲ୍କାପ୍ରସ୍ତରପାତ ବିଷୟରେ ବିଭିନ୍ନ ବୈଜ୍ଞାନିକ ନାନା ମତ ପ୍ରକାଶ କରିଅଛନ୍ତି ।

ଏହି ପ୍ରସ୍ତରଗୁଡ଼ିକ ଦେଖିବାକୁ ବନ୍ଧୁର ଏବଂ ସାଧାରଣତଃ ଲୌହ ପ୍ରଭୃତି ଧାତୁରେ ଗଠିତ; ତେଣୁ ଏଗୁଡ଼ିକ ଆଗ୍ନେୟଗିରି-ସମ୍ଭୂତ ବୋଲି କେହି କେହି ବୈଜ୍ଞାନିକ ନିରୂପଣ କରିଅଛନ୍ତି । ମାତ୍ର ଆଗ୍ନେୟଗିରିଜାତ ପ୍ରସ୍ତର ଆକାଶରୁ ପୃଥିବୀପୃଷ୍ଠକୁ କିପରି ଆସିଲା, ଏହାହିଁ ବିମୃଶ୍ୟ ବିଷୟ । ଏହି ବିଷୟରେ ପ୍ରଧାନତଃ ତିନି ଗୋଟି ମତ ଦେଖାଯାଏ । କେତେକ କହନ୍ତି, ଏହି ପ୍ରସ୍ତରଗୁଡ଼ିକ ଅନ୍ୟାନ୍ୟ ଗ୍ରହମଧ୍ୟସ୍ଥ ଆଗ୍ନେୟଗିରିରୁ ନିକ୍ଷିପ୍ତ ହୁଅନ୍ତି । କେତେକଙ୍କ ମତରେ ଚନ୍ଦ୍ର ମଧ୍ୟସ୍ଥ ଆଗ୍ନେୟଗିରିରୁ ଏମାନଙ୍କର ଜନ୍ମ । ଭୂପୃଷ୍ଠସ୍ଥ ଆଗ୍ନେୟଗିରି ଏହାର ଜନ୍ମସ୍ଥଳ ବୋଲି କେହି କେହି କହିଥାନ୍ତି । ଏହି ତିନୋଟି ମତର ଯୁକ୍ତାଯୁକ୍ତତା ବିଚାର କରାଯାଉ ।

ପ୍ରଥମତଃ, ବୈଜ୍ଞାନିକମାନେ ବିଭିନ୍ନ ଗ୍ରହ ସମ୍ବନ୍ଧରେ ଆଲୋଚନା କରି ଜାଣିଅଛନ୍ତି ଯେ ସେମାନଙ୍କ ମଧ୍ୟରେ ଆଗ୍ନେୟଗିରି ଥିବାର କୌଣସି ଆଭାସ ମିଳେ ନାହିଁ । ତାହା ଛଡ଼ା ସେଗୁଡ଼ିକ ଆମ୍ଭମାନଙ୍କଠାରୁ ଏତେ ଦୂରରେ ଅବସ୍ଥିତ ଯେ, ସେଠାରୁ ପୃଥିବୀ-ପୃଷ୍ଠକୁ ପଥର ଆସିବା ଅସମ୍ଭବ । ପୁନଶ୍ଚ ବିଭିନ୍ନ ଗ୍ରହର କକ୍ଷଗୁଡ଼ିକ ପୃଥିବୀ କକ୍ଷକୁ ଛେଦ କରୁ ନାହାନ୍ତି । ଏପରିସ୍ଥଳରେ ଅନ୍ୟ ଗ୍ରହର ଆଗ୍ନେୟଗିରିରୁ ଉଲ୍କାପ୍ରସ୍ତରର ଜନ୍ମବିଷୟ ଭାବିବା ଅଯୌକ୍ତିକ ।

ଦ୍ୱିତୀୟତଃ, ଚନ୍ଦ୍ରମଣ୍ଡଳକୁ ପରୀକ୍ଷା କଲେ ଜଣାଯାଏ ଯେ ତହିଁ ମଧ୍ୟରେ ଅନେକ ଆଗ୍ନେୟଗିରି ଅଛି । ମାତ୍ର ଏହି ଆଗ୍ନେୟ-ଗିରିଗୁଡ଼ିକ ବର୍ତ୍ତମାନ ସମ୍ପୂର୍ଣ୍ଣ ନିର୍ବାପିତ । ପୁନରପି ଗାଣିତିକ ନିୟମରେ ପ୍ରମାଣିତ ହୋଇଅଛି ଯେ, ଏଭଳି ପ୍ରସ୍ତରଖଣ୍ଡ ଚନ୍ଦ୍ରରୁ ପୃଥିବୀକୁ ନିକ୍ଷିପ୍ତ ହେବାକୁ ଯେତେ ଶକ୍ତି ଆବଶ୍ୟକ ତାହା ଚନ୍ଦ୍ରରେ କୌଣସି କାଳରେ ଥିବା ସମ୍ଭବ ନୁହେଁ; ଏଣୁ ଏମାନଙ୍କର

ଜନ୍ମ, ଚନ୍ଦ୍ରମଧ୍ୟସ୍ଥ ଆଗ୍ନେୟଗିରି ବୋଲି ନିଃସନ୍ଦେହରେ ବୋଲି-
ଯାଇ ନ ପାରେ ।

ବର୍ତ୍ତମାନ ଶେଷୋକ୍ତ ମତ ଆଲୋଚନା କରାଯାଉ । ଆମ୍ଭେ-
ମାନେ ଜାଣୁ ଯେ ପୃଥିବୀର ଶରୀର ଦିନେ ତରଳ ଥିଲା ଏବଂ କ୍ରମଶଃ
ତାହା କଠିନ ହୋଇଅଛି । ତଥାପି ଭୂଗର୍ଭ ଅଦ୍ୟାପି ତରଳ ଓ
ଉତ୍ତପ୍ତ ରହିଅଛି । ଆଗ୍ନେୟଗିରିନିକ୍ଷିପ୍ତ ଶିଳାପିଣ୍ଡଗୁଡ଼ିକ ଯେଉଁ
ଉପାଦାନରେ ଗଠିତ, ଉଲ୍କାପ୍ରସ୍ତରଗୁଡ଼ିକ ପ୍ରାୟ ସେହି ସେହି
ଉପାଦାନରେ ଗଠିତ । ଆମ୍ଭେମାନେ ଗୋଟିଏ ଢେଲା ବା ଜିନିଷ
ଊର୍ଦ୍ଧ୍ୱକୁ ନିକ୍ଷେପ କଲେ ତାହା କିଛି ଦୂର ଉପରକୁ ଉଠି ପୁଣି ଆସି
ତଳେ ପଡ଼େ । ମାଧ୍ୟାକର୍ଷଣ ଶକ୍ତି ଏହାର ପତନର କାରଣ, ଅର୍ଥାତ୍
ପୃଥିବୀ ସେହି ପଦାର୍ଥକୁ ଟାଣି ଆଣେ । ଖଣ୍ଡେ ଚୁମ୍ବକକୁ ଅନ୍ୟ
ଖଣ୍ଡେ ଲୁହା ଆଡ଼କୁ ଦେଖାଇଲେ ଲୁହାଖଣ୍ଡିକ ଯେପରି ଚୁମ୍ବକର
ଆକର୍ଷଣ ଯୋଗୁଁ ଆପେ ଆପେ ଆସି ଚୁମ୍ବକ ଦେହରେ ଲାଗିଯାଏ,
ସେହିପରି ଢେଲାଖଣ୍ଡିକ ଆସି ପୃଥିବୀରେ ପଡ଼େ । ଯଦି ଚୁମ୍ବକର
ଓ ଲୁହାର ଦୂରତ୍ୱ ବଢ଼ାଇ ଦିଆଯାଏ, ତାହାହେଲେ ଚୁମ୍ବକ
କଦାପି ସେହି ଲୁହା ଖଣ୍ଡିକୁ ଟାଣି ଆଣି ପାରିବ ନାହିଁ । କାରଣ
ଦୂରତ୍ୱ ହେତୁ ଚୁମ୍ବକର ଟାଣିଆଣିବା ଶକ୍ତି କମିଯାଏ । ପୃଥିବୀର
ଟାଣିବା ଶକ୍ତି ଠିକ୍ ସେହିପରି । ଆମ୍ଭେମାନେ ଯେତେ ଉପରକୁ
ଯିବା, ପୃଥିବୀର ଆକର୍ଷଣୀଶକ୍ତି ସେତିକି ହ୍ରାସପ୍ରାପ୍ତ ହେଉଥିବ
ଶେଷରେ ଏପରି ସ୍ଥାନରେ ପହଞ୍ଚିବା, ଯେଉଁଠାରେ ପୃଥିବୀର
ଆକର୍ଷଣୀଶକ୍ତି ଆଦୌ ରହିବ ନାହିଁ । ମାତ୍ର ସେଠାରେ
ସୂର୍ଯ୍ୟର ଆକର୍ଷଣ ଅନୁଭୂତ ହେବ । ଆଜିକାଲିକାର ଆଗ୍ନେୟ-
ଗିରିର କ୍ଷମତା କଳନା କରାଯାଇ ଦେଖାଯାଇଅଛି ଯେ,

ପୃଥିବୀଶକ୍ତିର ବହିର୍ଭୂତ ସ୍ଥାନକୁ ଖଣ୍ଡିଏ ପ୍ରସ୍ତରକୁ ଉତ୍କ୍ଷିପ୍ତ କରିବା ଏମାନଙ୍କ କ୍ଷମତାର ଅଜ୍ଞାତ, କିନ୍ତୁ ଗାଣିତିକମାନେ ଓ ବୈଜ୍ଞାନିକ-ମାନେ ଏକମତ ଯେ, ପୃଥିବୀପୃଷ୍ଠସ୍ଥ ଆଗ୍ନେୟଗିରିମାନଙ୍କର ଦିନେ ଏହି ଶକ୍ତି ଥିଲା । ସେହି ସମୟରେ ଶତ ଶତ ଶିଳାପିଣ୍ଡ ଆକାଶକୁ ଏତେ ବେଗରେ ଉତ୍କ୍ଷିପ୍ତ ହୋଇଥିଲ ଯେ, ସେଗୁଡ଼ିକୁ ଫେରାଇ ଆଣିବା ପୃଥିବୀପକ୍ଷରେ ଅସମ୍ଭବ ହୋଇଥିଲା । ଏହିପରି ଉପାୟରେ ଉତ୍କ୍ଷିପ୍ତ ଶିଳାପିଣ୍ଡଗୁଡ଼ିକ ସୂର୍ଯ୍ୟଦ୍ୱାରା ଆକୃଷ୍ଟ ହୋଇ ତାହାର ଚତୁର୍ଦ୍ଦିଗରେ ପ୍ରଦକ୍ଷିଣ କରିବାରେ ଲାଗିଲେ । ଏହି ପିଣ୍ଡମାନଙ୍କର ଜନ୍ମବିବରଣ ଏହିପରି । ଏମାନେ ପୃଥିବୀରୁ ଉତ୍କ୍ଷିପ୍ତ ହୋଇ ସୂର୍ଯ୍ୟ ଗ୍ରହପାଖରେ ଭ୍ରମଣ କରୁଥିବାରୁ ସେମାନଙ୍କର ଭ୍ରମଣପଥର ଏକ ଅଂଶ ପୃଥିବୀର ସନ୍ନିକଟ । ଉଲ୍କାପିଣ୍ଡଗୁଡ଼ିକ ପୃଥିବୀର ସନ୍ନିକଟ କକ୍ଷ ମଧ୍ୟ ଦେଇ ଗତି କଲାବେଳେ ବାୟୁମଣ୍ଡଳର ସଂସ୍ପର୍ଶରେ ଆସି ଭୂପୃଷ୍ଠରେ ପତିତ ହୁଅନ୍ତି । ପୃଥିବୀର ଗତି ଯେଉଁ ଦିଗକୁ, ଏମାନଙ୍କର ଗତି ସାଧାରଣତଃ ସେହି ଦିଗକୁ ହୋଇଥିବାରୁ ଏମାନଙ୍କର ବାୟୁମଣ୍ଡଳ ସହିତ ସଂସ୍ପର୍ଶଦ୍ୱାରା ଅଗ୍ନି ଜାତ ହୁଏ ନାହିଁ, ତେଣୁ ପ୍ରସ୍ତରଖଣ୍ଡମାନ ସେହିପରି ଭୂପୃଷ୍ଠରେ ପଡ଼ିଯାନ୍ତି ।

ଶ୍ରୀ ବଂଶୀଧର ସାମନ୍ତରାୟ, ଏମ୍ ଏସ୍‌ସି.

## ପ୍ରଶ୍ନ

୧ । ଉଲ୍କା କଅଣ ? ପତନ ସମୟରେ ଏହା ଉଜ୍ଜ୍ୱଳ ଦେଖାଯାଏ କାହିଁକି ?

୨ । ଉଲ୍କାପ୍ରସ୍ତର କଅଣ ? ଏହାର ପତନ ସମ୍ବନ୍ଧରେ କି କି ବିଭିନ୍ନ ମତ ଦେଖାଯାଏ ? ତନ୍ମଧ୍ୟରୁ କେଉଁଟି ଯୁକ୍ତିଯୁକ୍ତ ?

୩ । ଅର୍ଥ ଲେଖ—ସ୍ୱର୍ଣ୍ଣ, ସମାନ୍ତରାଳ, ନିର୍ବାପିତ, ମାଧ୍ୟାକର୍ଷଣ-ଶକ୍ତି, ବୃତ୍ତିଭ୍ରଷ୍ଟ ।

୪ । ବ୍ୟୁତ୍ପତ୍ତି ଲେଖ—ମୁଗ୍‌ଧ, ଆଗ୍ନେୟ, ସମ୍ଭୂତ, ବୈଜ୍ଞାନିକ, ଉତ୍‌କ୍ଷିପ୍ତ ।

୫ । ବିପରୀତାର୍ଥବୋଧକ ଶବ୍ଦ ଲେଖ—ପ୍ରଶ୍ନ, ମିଳିତ, ନଷ୍ଟପ୍ରାୟ, ଶେଷୋକ୍ତ ।

୬ । ସନ୍ଧିବିଚ୍ଛେଦ କର—ଚତୁର୍ଦ୍ଦିଗ, ବୃତ୍ତିଭ୍ରଷ୍ଟ, ପୂର୍ବୋକ୍ତ, ପର୍ଯ୍ୟବେକ୍ଷଣ ।

---

## କାଞ୍ଚିବିଜୟ

ଦେଖିଲି ଦୃଶ୍ୟ ମୁଁ ବସି ତୋର ତଟେ,
ଲିଖି ରହିଛି ଯା ସଦା ସ୍ମୃତିପଟେ,
ସମୀରେ ଅଞ୍ଚଳ ମାଳା ସ୍ଫୀତ କରି
ଦକ୍ଷିଣୁ ଆସିଲି ଶତ ଶତ ତରୀ,
ତରୀରେ ଆସୀନ ସୈନିକ ନିକର,
ସୌରକରେ ବର୍ମ ଆୟୁଧ ଭାସ୍ୱର,
ସ୍ୱର୍ଣ୍ଣ-ସୁଦର୍ଶନ-ଲାଞ୍ଛନେ ଲାଞ୍ଛିତ
କେତନ୍ତ ପତାକା ବାତେ ଆନ୍ଦୋଳିତ,
ତାଳେ ତାଳେ ପଡ଼ି ତୋ ବକ୍ଷେ କ୍ଷେପଣୀ
ଉଠଇ ଗମ୍ଭୀରେ ଜୟଗୀତଧ୍ୱନି;
ମଧ୍ୟେ ଶୋଭେ ତରୀ ଅତି ମନୋହର,
ଗଜଦନ୍ତେ ଗଢ଼ା ଯାର କଳେବର
ରଙ୍ଗ ଚନ୍ଦ୍ରାତପ ସ୍ୱର୍ଣ୍ଣ ତାରକିତ
ସ୍ଫଟିକ ଯଷ୍ଟିରେ ଊର୍ଦ୍ଧ୍ୱେ ବିଳମ୍ବିତ,

## STORR

# Middle School Series.

୧ ସରଳ ସାହିତ୍ୟ ୧ମ ସୋପାନ (ଚତୁର୍ଥ ଶ୍ରେଣୀ ନିମନ୍ତେ) — ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ, ବି. ଏ ଓ ଶ୍ରୀ ନୀଳକଣ୍ଠ ରଥ — ଟ ୦।

୨ ,, ୨ୟ (୫ମ ଶ୍ରେଣୀ) ,, — ଟ ୦।/

,, ,, ୩ୟ, ୪ର୍ଥ ଓ ୫ମ [ଶୀଘ୍ର ପ୍ରକାଶିତ ହେବ]

୩ ଭାରତ ଇତିହାସ ୧ମ ଭାଗ (ପ୍ରଥମ ଫରମ୍ ବା ୬ଷ୍ଠ ଶ୍ରେଣୀ ପାଇଁ) — ଶ୍ରୀ କାଳିଆ ପାଣିଗ୍ରାହୀ ଏଲ୍. ଟି ଓ ଶ୍ରୀ କୁଳମଣି ମିଶ୍ର ଏଲ୍. ଟି — ଟ ୦୳୵

୪ ,, ୨ୟ (୨ୟ ଫରମ ବା ୭ମ ଶ୍ରେଣୀ ପାଇଁ) ,, — ଟ ୦୳

୫ ,, ୩ୟ (୩ୟ ଫରମ୍ ବା ୮ମ ଶ୍ରେଣୀ ନିମନ୍ତେ) ଶ୍ରୀ କାଳିଆ ପାଣିଗ୍ରାହୀ ବି. ଏ. ଏଲ୍. ଟି — ଟ ୦୳

୬ ପ୍ରାଥମିକ ବିଜ୍ଞାନପାଠ (୧ମ ଫର୍ମ୍ ବା ୬ଷ୍ଠ କ୍ଲାସ୍ ପାଇଁ) ଶ୍ରୀ ଶ୍ୟାମସୁନ୍ଦର ଗନ୍ତାଏତ, ବି. ଏ. ଏଲ୍. ଟି — ଟ ୦୳

୭ ପ୍ରାଥମିକ ଗଣିତ (୧ମ ଫର୍ମ୍ ପାଇଁ) ଶ୍ରୀ ହୀରାଲାଲ ବର୍ଦ୍ଧନ, ବି. ଏ. ଏଲ୍. ଟି — ଟ ୧।

୮ ଭୂଗୋଳ ଶିକ୍ଷା (ପ୍ରଥମ ଫରମ୍ ନିମନ୍ତେ) ଶ୍ରୀ ରାମଚନ୍ଦ୍ର ଆଚାର୍ଯ୍ୟ ବି. ଏ. — ଟ ୦ ।୵

୯ ,, (ଦ୍ୱିତୀୟ ଓ ତୃତୀୟ ଫରମ୍ ନିମନ୍ତେ) ଶୀଘ୍ର ପ୍ରକାଶିତ ହେବ ।

୧୦ ସହଜ ଗଣିତ ଶିକ୍ଷା (ଚତୁର୍ଥ ଶ୍ରେଣୀ ନିମନ୍ତେ) ଶ୍ରୀ ଦିବାକର ପଟ୍ଟନାୟକ — ଟ ୦।୶

,, (ପଞ୍ଚମ ଶ୍ରେଣୀ ନିମନ୍ତେ) ,, — ଟ ୦୳୵

ଛାତ୍ରଭଣ୍ଡାର—ବ୍ରହ୍ମପୁର { **The Students' Store**
Berhampore (Ganjam)